# ଲକ୍ଷୀର ଆଲୋକ

(ସାମାଜିକ ଉପନ୍ୟାସ)

ରଚନା :

**ନାରାୟଣ ମହାନ୍ତି**

ଅଧ୍ୟାପକ ସାଂଧ୍ୟ ମହାବିଦ୍ୟାଳୟ, ବ୍ରହ୍ମପୁର

ପ୍ରକାଶକ :

**ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ**

ଧର୍ମାରଣ୍ଡ, ପୁରୀ ।

ମୁଦ୍ରଣ :

**କଳିଙ୍ଗ ପ୍ରେସ୍**

ହେଡ୍ ପୋଷ୍ଟ ଅଫିସ୍ ରୋଡ୍,

ବ୍ରହ୍ମପୁର-୧ (ଗଞ୍ଜାମ)

ଶୁଭମୁକ୍ତି :

ଜୁଲାଇ ୨ ତାରିଖ, ୧୯୭୮

ମୂଲ୍ୟ : ୫ ୪ ଙ୍କା

Digitized by PPRACHIN, SOA

‘ରଷୀର ଅଙ୍କେଣ’ ମୋର ଦ୍ୱିତୀୟ ଉପନ୍ୟାସ । ଉପନ୍ୟାସଟିର ‘ସବୁ କଥା’ ମନ ଗଢ଼ା । କିନ୍ତୁ ଅର୍ଥହୀନ “ସମାଜଝଣ୍ଡା” ନୁହେଁ । ଭାବୁ ଭାବୁ କେତେ କଥା ମନରେ ଆସେ । ସବୁ ଲୋକଙ୍କଠି ଘଟିଥିବାପରି ମନେହୁଏ । ମନର ଅନ୍ତର୍ଜଗତରେ ଲୋକ କଥାର ଜଟିଳ ସମାଧାନ ହୁଏ । କଲମ ମୋର ନିର୍ଦ୍ଦୋଷ ।

ଭଗବତ୍ ସନ୍ନ୍ୟାସୀ ପିତା ମାତାଙ୍କର ଆଗ୍ରହ—“ଭଗବାନଙ୍କ ନାଁ ଥାଇ ବହିଟିଏ ଲେଖ ।” ସେମାନଙ୍କ ଆଗ୍ରହ ମତେ କର୍ମନିଷ୍ଠ କରିଛି ।

ଏ ଉପନ୍ୟାସଟିର ପ୍ରଥମ ପାଠକ ମୋର ବନ୍ଧୁ ଅଧ୍ୟାପକ ଶ୍ରୀ ମହେଶ୍ୱର ଦାସ । ସେ ହିଁ ଏହାର ପ୍ରଥମ ସମୀକ୍ଷକ । ତାଙ୍କର ପ୍ରେରଣା ଓ ସାହାଯ୍ୟ ଭୁଲିପାରିବି ନାହିଁ ।

ପ୍ରେସ୍ ମାଲିକ ଶ୍ରୀ ବାଉରିଆ ଓ ତାଙ୍କର ସହକର୍ମୀମାନଙ୍କର ସହଯୋଗ ଅମୂଲ୍ୟ ।

ପ୍ରକାଶକ ମୋର ଆତ୍ମୀୟ, ତାଙ୍କର ଶୁଭେଚ୍ଛା ଓ ସାହାଯ୍ୟ ମୋର ଏକାନ୍ତ କାମ୍ୟ । ଏ କର୍ତ୍ତବ୍ୟରେ ସେ କେବେହେଲେ ଅବହେଳା କରି ନାହାନ୍ତି ।

ମୁଁ ସେମାନଙ୍କ ନିକଟରେ ଚିର କୃତଜ୍ଞ ।

—ନାରାୟଣ ମହାନ୍ତି

Digitized by PPRACHIN, SOA

# ସ୍ମୃତିର ଆଲୋକ

## (୧)

ସେହି ଘଣ୍ଟକପୁର ଭାଡ଼ାଣୀ ସାମାନ୍ୟ କୁଟୀର ।

ସାଧୁ ମହାନ୍ତଙ୍କ ଆଖିର ଉଜ୍ଜ୍ୱଳ ଆଲୋକ ସେଥିରେ ଦେଖା-
ଯାଉଛି । ଦେଖାଯାଉଛି ମାଟିଆପଡ଼ାର ଦେଖ ସବୁଜ ବୃଦ୍‌ବୃଦ୍‌ଙ୍କ
ଜଙ୍ଗଲ ଭିତରେ । ସନ୍ଧ୍ୟାର ପିତାଭ ସୌନ୍ଦର୍ଯ୍ୟ ଅସ୍ତଗାମୀ ସୂର୍ଯ୍ୟଙ୍କୁ
ତାଙ୍କର ବୈରାଗ୍ୟ କରିଦେଉଥିଲା । ଉତ୍କଳପୁର ଉତ୍ତରରେ
ଅବସନ୍ନ ଆକାଶ ମାଟିଆପଡ଼ାର ସବୁଜ ଅନ୍ଧାର ଭିତରେ କେଉଁଠି
ସେଥିର ଆଶ୍ରୟ ଖୋଜୁଥିଲା । ଘନ ଗୁଳ୍ମ ଘାଲିଥିବା ସବୁଜ
ଗାଲିଚା ପରି ମାଟିଆପଡ଼ା ଜଙ୍ଗଲ । ଏଠି ଦିନେ ସବୁଜ ବୃନ୍ଦରେ
ହଜିଯିବାକୁ ଇଚ୍ଛା କରୁଥିଲେ ସାଧୁ ମହାନ୍ତ । ସେଦିନ ଏ ଜଙ୍ଗଲ
ଥିଲା ଶାଳ, ପିଆଶାଳ, ପଳାଶ ଗଛମାନଙ୍କ ଜଙ୍ଗଲ । ନାନା ଶ୍ରେଣୀର
ଲତାଗୁଳ୍ମର ଅବାଧ ସମାହାର । ଏ ଡାଳରୁ ସେ ଡାଳକୁ ଲମ୍ଫ
ଦେଉଥିବା ଜନ୍ତୁଙ୍କର ପଛପଟରେ ସାଧୁ ମହାନ୍ତଙ୍କର କୈଶୋର ଏଠି
ଅନ୍ଧାରେ କେତେ ଥର ବୁଲିଛି । ଲାଲ ହଳଦ ପ୍ରଜାପତିର
ମାୟାବିନୀ ସ୍ୱପ୍ନରେ ଅଧୀର ହୋଇଛି । ଶାଳ, ପଳାଶ ଫୁଲର ଲୁଚ
ଲୁଚ ଆଲୋରେ ଉଦ୍ଭ୍ରାନ୍ତ ହୋଇଛି । ପୃଷ୍ଠ ମଧ୍ୟ ସୃଷ୍ଟିଛି, ଜଙ୍ଗଲର
ଭଯୋଦ୍ଭବ ମଧୁ, ଲଜ୍ଜିତ ମୋହନ ଶିଖ ଲଦାଳ କଣ୍ଠାରୁ ।

Digitized by PPRACHIN, SOA

କେତେ ପୁଣି ଜଙ୍ଗଲର ଜାନୁଆର ସାଧୁ ମହାନ୍ତର ଭଜନ ବସ୍ୟପରେ କୌତୂହଳ ବାଢ଼ ଟେକି ଶୁଣନ୍ତି । କଣ୍ଠୋର ସାଧୁ ମହାନ୍ତର ଦରଶନ ଗନ୍ଧ ମଧ୍ୟ ଦେବେନି ଜଣଛି । ଜଙ୍ଗଲ ରାଜା ମହାବଳର କାହାଣୀ ସେ ଅନେକ ବାର ଶୁଣିଛି । ଖୋଜ ଚାଲୁ ଚାଲୁ ସାଙ୍ଗମେଳରେ ଘଞ୍ଚ ଅରଣ୍ୟରେ ପଶିଛି । କେତେ ହାବୁଡ଼େ ପଡ଼ନ୍ତା ଟେକେ ! କଣେଇ କାନକୁ ପକ୍ଷୀର କାକଳି ଶୁଭେ ନାନାବାଦ୍ୟ ଗୀତପର । ଅଶୁଣା ବାଘ ହେଣ୍ଟାଳ କରେ ଆଖିପୂଜା ଭୟ ପର । ଅଶ୍ଚର ସେଇ ଭୟ ଦୂର ନ ହେଉଣୁ ଯୌବନ ଆସି ପହଞ୍ଚେ । ମାଟିଆପଡ଼ା ବନାନ୍ତରେ ସବୁଜମାର ନୂଆ ପରଶ । ଫୁଲସର ରଙ୍ଗରେ, ପ୍ରଜାପତିର ଛନ୍ଦରେ ସେଇ ସ୍ୱପ୍ନମୟୀ ଯୌବନର ସ୍ପନ୍ଦନ ସାଧୁ ମହାନ୍ତର ହୃଦୟରେ ଧସ୍ ଦେଇ ଦେଇ ଖସି ଯାଉଥିଲା । ମନେ ଜଣ୍ଟଥିଲା ଏବେ ସେପରି ଫିକ୍ପଣ୍ଡା ହସି ମ୍ଳାନଯାଉଛି । ପାଟଳ ଫୁଲ ଫୁଟି ଯାଉଛି ଧାଡ଼ ଧାଡ଼ ହୋଇ । ମାଟିଆପଡ଼ା ଜଙ୍ଗଲରେ କେଉଁଠି ଚନ୍ଦନର ଗଛଥିଲା । ସାଧୁ ମହାନ୍ତ ବହୁଥର ଅନୁସନ୍ଧାନ କରିଛି । ଚନ୍ଦନ ଗଛରେ ସାପ ଥାଏ, ଫଣାଟେକ ଦଂଶନ କରେ । ଏ ସବୁ କାହାଣୀର ମନଗଢ଼ା ଭୟ ତାକୁ ଛୁଇଁନା । ଛୁଇଁନା ତାକୁ ଝୁଣାଙ୍କ ମଠର ସାହା । ଓମାଉଆ ଗ୍ରାମର କାହାଣୀ । ଜଲ ମ୍ତ୍ର ଷଷ୍ଠୀ ଆଖିର ଗାଢ଼ ନୀଳିମା । ଶକ୍ତ ସୁନ୍ଦର ଦେହର ମାଂସପେଶୀ ଭିତରୁ ସାବନା ଭଙ୍ଗ, ଶାଳଗ୍ରାମ ପରି ଦେଖାଯାଏ । ସ୍ୱଳ୍ପହାସିଆ ସ୍ନିଗ୍ଧ ସାଧୁ ମହାନ୍ତ ଥିଲେ ସୁବକ୍ତା ନେତା । ଆଜି ସେଇ ନେତୃତ୍ୱ ଫଳରେ ସେଦିନ ମାଟିଆପଡ଼ା ଜଙ୍ଗଲ ମଝିରେ ଗୋଲାପୋଇ ପାଉଥିଲା କପିଳେଶ୍ୱର ମନ୍ଦିର— ମାଟିଆପଡ଼ା ଗ୍ରାମବାସୀଙ୍କର ଆରାଧ୍ୟ ଦେବତା, ମାଟିଆପଡ଼ା ଗ୍ରାମବାସୀଙ୍କର ବିଶ୍ୱାସ, ତୃପ୍ତି, ଅଭିଳାଷ ଓ ଆନନ୍ଦର ଝଙ୍କସୀମା ।

Digitized by PPRACHIN, SOA

ମାଟିଆପଡ଼ା ଗ୍ରାମର ସବୁ ପାପୀତାପୀଙ୍କର ପାପ ଓ ବେଦନାକୁ ଆତ୍ମସାତ କରି କପିଳେଶ୍ୱର ଶିବଲିଙ୍ଗ ସେଠି ବିରାଜମାନ ଥିଲେ । କପିଳେଶ୍ୱରଙ୍କ ପରି ସାଧୁ ମହାନ୍ତ ବି ଗ୍ରାମବାସୀଙ୍କ ହୃଦୟରେ ଆସନ ମାଡ଼ିବସିଥିଲେ । କପିଳେଶ୍ୱର ମଠଟି ବୋଧହୁଏ ଛଅକୋଡ଼ି ବର୍ଷ ତଳେ । ସାଧୁ ମହାନ୍ତଙ୍କ ଜୀବନରେ ପ୍ରାୟ ଚାରିକୋଡ଼ି ବର୍ଷ ଗତ ହୋଇଗଲାଣି । ଆଜିର ଘଟଣା ଘଟିବା ବେଳେ ବୋଧହୁଏ ସେଇ ଚାରିକୋଡ଼ି ବର୍ଷର ସାଧୁ ମହାନ୍ତ ଅତି ବୃଦ୍ଧ ହୋଇ ଯାଇଛନ୍ତି ସମାଜର ଧର୍ମବନ୍ଧା ଖମ୍ବରେ । ମାଟିଆପଡ଼ା ଅବଶ୍ୟ ସ୍ଥାନେ ସ୍ଥାନେ ଟାଙ୍ଗର ହୋଇଯାଉଛି, ମଣିଷ ବସ୍ତିର ଅସମତାପଣ । କପିଳେଶ୍ୱର ମଠରର ଅବସ୍ଥା ଜର୍ଜ୍ଜର । ଅନ୍ତେ ସେପରି ଏକ କ୍ଲାନ୍ତ କପୋତ । ସାଧୁ ମହାନ୍ତ ବସିରହିଥିଲେ ମଠରୁ ଟିକେ ଅନତି ଦୂରରେ ପୁରୁଣା ପୁଷ୍କରିଣୀର ତଟଦେଶରେ । ଟ୍ଲୋଟ ଟ୍ଲୋଟ ତେଲ ସ୍ବୁଢ଼ ଚୁପି ଚୁପି କଥା କହୁଥିଲେ । ତାଙ୍କୁ ବଧୀର କରି ବସିଥିଲେ ସାଧୁ ମହାନ୍ତ ଲୋକଙ୍କ କଥା ନ ଶୁଣିଲା ପରି ।

ଅନ୍ଧାର ନେସି ହୋଇ ଯାଉଥିଲା ଦେହ ଆଉ ମନରେ । ସାଧନା ଭଜନର ଲୋକଟି କେଉଁଠି ହଜିଯାଉଥିଲା ହଜିବାର ଲଗ୍ନରେ । ଆକାଶରେ ତାରାର ଜହ୍ନ । ନବାତ ନସ୍ତ୍ର ମଣିଷଟିକୁ ବି କେମିତି ନିର୍ନିମେଷ ଦୃଷ୍ଟିରେ ଚାହିଁଥିଲା । ସଞ୍ଜର ଅନ୍ଧାର ପିଣ୍ଡା ଘଣ୍ଟଧ୍ୱନି କେତେବେଳୁ ଶୁଭିଲାଣି । ବୃନ୍ଦା ଫେରି ବୁଣିଲା ପଞ୍ଜରେ କାର୍ତ୍ତିକ କେନ୍ଦ୍ରରେ ଜଟଣି ସହର । ଖାଲି ଆଲୁଅ ଝୋଟକଣ୍ଠି । ବି କେତେବେଳେ ଗଣିଲେ । ସେଇ ଆଲୋକର ସହରରେ ସୌଦାଗର ଅଛନ୍ତି, ଅଛନ୍ତି ମିଲ୍ ମାଲିକ, ଅଛନ୍ତି ରେଳକର୍ମଚାରୀ, କୁଲି, ମଜୁରିଆ, ଅଛି ଝାଡୁଣୀ ବୁଢ଼ୀ ଆଲୋକର ଜର୍ଯ୍ୟାଡୋ

Digitized by PPRACHIN, SOA

ଏତରେ ଆନନ୍ଦର ଖେଦ ସେପରି ବେହିଲା ବୁଝୁଛନ୍ତି । ସେଇ ଆନେକର ଆନନ୍ଦରେ ଅଙ୍କିତ ଆଜ ମାଟିଆପଡ଼ାର ସୂଚକ । ବୃଦ୍ଧ ସାଧୁ ମହାତ୍ମାଙ୍କର ଆଖିରେ ସେଇ ଅନେକ ଓ ଦିନେ ସସ୍ମିତ କରିଥିଲା ବହୁ ଆଶାର ଲହ ଧାଡ଼ି । ଗାଁର ଉତ୍ତମୋତ ସହର, ଗାଁର ଜନ ଭଣ୍ଡାର ସହର । ମାଟିଆପଡ଼ା ଗ୍ରାମବାସୀ ସ୍ୱର୍ଗଧାମ—କାରଣ ଗାଁ ପାଖରେ ଗଢ଼ିଉଠୁଛି ଗୋଟିଏ ଶିଳ୍ପସମୃଦ୍ଧ ସହର ଯାହା ଦିନେ ଥିବ ଷ୍ଟେସନ ହଲଟ ଜଳବାର ଏକ କ୍ଷୁଦ୍ର ରେଳ ଜଙ୍କସନ । ସ୍ୱଳ୍ପ ବର୍ଷ ତଳେ ସାଧୁ ମହାତ୍ମାଙ୍କର ପ୍ରସାରିତ ଦୃଷ୍ଟିରେ ମାନଚିତ୍ର ଯାହା ଆଙ୍କି ହୋଇ ଯାଇଥିଲା ମାଟିଆପଡ଼ା ସମୃଦ୍ଧିର ଚିତ୍ର । ସତେ ଯେପରି ସେହି ତାର କର୍ଣ୍ଣ । ସେ ସ୍ୱୀ ଖାଁ ଉକାଶର ଦାପ୍ତିତ୍ୱବାନ ମୁଖର ମଧୁଫେଣାର ଏକକ ମଧୁମାଛି । କିନ୍ତୁ ସ୍ୱଳ୍ପବର୍ଷ ପରେ କିଏ ଯେପରି କହେ ଧିକ୍ ତୋର ମୁରବି ପଣିଆ । ଜର୍ଜର ଅନ୍ଧାରରେ ନିରର୍ଥକ ବସ୍ତି ରହିଛି ଗୋଟାଏ ଶହର । ମଣିଷର ଦେହ, ମାଟି ତାର ଆଁ ହୋଇଯାଇଛି । କିଛି ବଶୁନ । ବଶୁଛି କେବଳ ଜଣେ ପିଏ ଆୋର କରିଥିଲା ଉପିଟେନଷ୍ଟର ମନ୍ଦିରର ଯୋଜନା । ପିଏ ବନ୍ଧୁ ନେଇଥିଲା ଆଉ ଚାଳିଶଜଣ ସହକର୍ମୀଙ୍କ ସଙ୍ଗେ ଗୋଟା ଗୋଟା ଲଟା ଲଦ୍ର ଦ୍ୟୁମ୍ନର ଭୂମି ପିଏ ।



Digitized by PPRACHIN, SOA

ସାଧୁ ମହାନ୍ତି ମନେ କରିଥିଲେ ଅଞ୍ଚଳରେ ସେ ବହୁ ଉଥ
ଅଭେନମ କରିଗଲେଣି । ପକ୍କା ରାସ୍ତା, କ୍ଲବ ଘର, ପୋଷ୍ଟ ଅଫିସ,
ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ନୈଶ ବିଦ୍ୟାଳୟ, ହାଇସ୍କୁଲ, ବ୍ଲକ
ଅଫିସ, ମହିଳା ସମିତି, କଲେଜ ପଢୁଆ ପିଲା, ନେତା, ସ୍ୱଙ୍କରଆ
ଚଳନ୍ତି ଆକୁଅ, ବସଷ୍ଟାଣ୍ଡ, ଷ୍ଟକମ୍ୟାନ୍ ସେଣ୍ଟର, ସୁଇଜ କଳ,
ଅଟାକଳ । ଗାଁ ପଡ଼ୁଛି ଅଧା ସହରଟିଏ । ସରକାରୀ ଉଦ୍ୟମରେ
ପୁଣି ଗୋଟାଏ ଡାଏରୀ ଫାର୍ମ, କୁକୁଡ଼ା ପାଳନ କେନ୍ଦ୍ର ବସିବାର
ବ୍ୟବସ୍ଥା ହେଉଛି । ଜମି ହେଉଛି, ଘରଅ ପଡ଼ୁଛି—କୃଷି ବିଭାଗ
ପକ୍ଷରୁ ମଧ୍ୟ କିଛି କିଛି ଯୋଜନା କରାଯାଇଛି । କେଉଁଠି ଗୋଟାଏ
ଫଳ ଉଦ୍ୟାନ କରାଯିବ । ପାଖାପାଖି ଦଶ ବାର ଗାଁର ଲୋକଙ୍କର
ଆଡ଼୍ଡା ଜମେ ମାଟିଆପଡ଼ାର ଚଉଠ ନାଏକ ଷ୍ଟେଟ ବଜାରରେ ।
ଦୁଇ ଚାରିଟା ମନୋହରୀ ଦୋକାନ । ଏକ ଦୁଇଟା ଭେଜରଣ
ଦୋକାନ, ଦୁଇଟା ବାଲକଟା ସେଲୁନ୍, ଦୁଇଟା ଲଣ୍ଡ୍ରୀ, ଚାରିଟା
ଚା’ ଦୋକାନ, ତା ଭିତରୁ ଗୋଟାଏ ‘ମାଡ୍ରାସ କେଫ ଓ
ଭୋଜନାଳୟ, ମାଟିଆପଡ଼ା ପଣ୍ଡୁ ମାହୁନ୍ତର । ଦଶ ବାରଟା
ସାଇକେଲ ଏଣେ ତେଣେ ହେଉଛନ୍ତି । ସକାଳେ ଖାସିର ମିଅଁର ମାଂସ
ଦୋକାନରେ ଭିଡ଼ ଜମେ । ହାଫିଜ୍ ମିଅଁ ଅମ୍ଳ ଗଳରେ କଟା
ଛେଳି ଟାଙ୍ଗି ବସି ରହେ । ପଇସା ଦୋକାନ, ମାଛ ଦୋକାନ
ମାଛି ଭଣଭଣ । ବୁଲ ବଣ୍ଡ ଦୁଇଟା ବୁଲୁଛନ୍ତି । ଆଦର୍ଶ ଉଚ

Digitized by PPRACHIN, SOA

ପ୍ରାଥମିକ ବିଦ୍ୟାଳୟର ବାରଣ୍ଡାରେ ଫ୍ଲାଗଷ୍ଟାଫ୍ଟିଏ ପୋତା ହୋଇଛି—ସ୍ୱାଧୀନତା ଦିବସରେ ପତାକା ଉତ୍ତୋଳନ ହେବା ପାଇଁ । ସକାଳେ ସନ୍ଧ୍ୟାବେଳେ ବ୍ଲୁ' ଜଙ୍ଗିଆ ଦୋକାନରେ ଭିଡ଼ ଜମେ । ସାଲୁନ୍‌ରେ ଗୁଞ୍ଜନ, ଅର୍ଥଗାନ, ଚଳଚ୍ଚିତ୍ର ଆଲୋଚନା ହୁଏ । ସନ୍ଧ୍ୟା ହେଲେ ଦଳ ଦଳ ଯୁବକ ଯୁବତୀ ବୁଲି ବାହାରନ୍ତି ନଟିଣୀ ସହର । ଆଶା କରୁଯାଉଛି ସେମାନଙ୍କ ସଂଖ୍ୟା ମଧ୍ୟ ବଲ୍‌ବୁଲ କମିଟିର ଆଉ କେତେ ଦିନ ପରେ । କାରଣ ଖାସ ସ୍ୱାଇଁ ସିନେମା ହଲଟିଏ ବଜାରରେ ଖୋଲିବ ବୋଲି କାମ ଆରମ୍ଭ କଲେଣି । ଆଖପାଖରେ ଦଶ କୋଡ଼ିଏଟା ଗାଁ ଭିତରେ ମାଟିଆପଡ଼ା ଟୋକାଟାଏ ଉନ୍ନତ ଗାଁ ବୋଲି ସମସ୍ତେ କହୁଲେଣି । କେହି କେହି ସହର ବୋଲି କହନ୍ତି । ମାଟିଆପଡ଼ା ପ୍ରଗତିର ଏଇ ଶିଖ ଦେଖି ସାଧୁ ମହାନ୍ତି କହୁଥିଲେ ସେ ବହୁ ପଥ ଅତିକ୍ରମ କରି ଗଲେଣି । ପ୍ରଗତିଶୀଳ ଏଇ ଗାଁର ନେତ୍ରିତ୍ୱ ବ୍ୟକ୍ତି ସାଧୁ ମହାନ୍ତି । ସବୁ ଘଟଣାଚକ୍ର ଦଳ ତାଙ୍କୁ ନଜର ବୋଲି ଜାଣନ୍ତି । ବ୍ଲକ ଅଫିସର ବି. ଡି. ଓ. ଙ୍କ ଠାରୁ ଆରମ୍ଭ କରି ପ୍ରାଇମେରୀ ହେଲଥ୍ ସେଣ୍ଟରର ଡାକ୍ତର, ପଞ୍ଚାୟତ ସରପଞ୍ଚ, ପୋଷ୍ଟ ମାଷ୍ଟର ବାବୁ, ହାଇସ୍କୁଲ ହେଡ୍‌ମାଷ୍ଟର ବାବୁ ସମସ୍ତେ ଜାଣନ୍ତି ସାଧୁ ମହାନ୍ତି ମାଟିଆ ପଡ଼ାର ଗୌରବ ନାୟକ । ପାନବାଲା, ଚାଉଳବାଲା, ମାଂସବାଲା, ରିକ୍‌ସା-ବାଲା ଠାରୁ ଆରମ୍ଭ କରି ମାରୱାଡ଼ି ମହାରାଜ ପର୍ଯ୍ୟନ୍ତ ସମସ୍ତଙ୍କ ଆଖିରେ ସାଧୁ ମହାନ୍ତି ଜଣେ ମହାପୁରୁଷ । ସାଧୁ ମହାନ୍ତି କେବେ କହିଲେ ଶୁଣୁଥିଲେ ତାଙ୍କ ସ୍ଥାନ ସମସ୍ତଙ୍କ ଆଗରେ । ସେ ନେତା ମାଟିଆପଡ଼ାର ସଂପୂର୍ଣ୍ଣ ବର୍ଷର ଇତିହାସ ସେ ଜାଣେ । ମାଟିଆପଡ଼ା ଗାଁର ପ୍ରତ୍ୟେକ ଉନ୍ନତିର ଯୋଜନାରେ ତାଙ୍କର ହାତର ସ୍ପର୍ଶ ବାଜିଛି । "ପିଲେ ଆସିଲ ଶୁଣ । ସମସ୍ତଙ୍କ ସଙ୍ଗେ ବାଜିମାର

Digitized by PPRACHIN, SOA

ଆଗରେ ସ୍ୱର । ଜଟଣୀ ସହର ସରକାର ଗଢ଼ୁଛି, ତେବେ ଗଡ଼ ମହିମାଗଡ଼ା ।" ଲକ୍ଷ୍ମୀର ବାଦଶା ହେଲେ ମାହିମାଗଡ଼ାର ସାଧୁ ମହାନ୍ତ । ଆଜିକାଲିର ପାଠ ପଢ଼ୁଆ ଲୋକେ ଏଇ କଥା ବୁଝାଉଛନ୍ତି ହୁଅନ୍ତି ।

ସାଧୁ ମହାନ୍ତ ଲୁଚିଥିଲେ ଅନ୍ୟ ପ୍ରକାରର । କେଉଁଠି ସେପଟେ ଭଣ୍ଡ ଭୂତ ରହିଗଲା । ସେଇ କପିଳେଶ୍ୱର ମନ୍ଦିର ଅଛି । ଏବେ ବି ସେ ମାହିମାଗଡ଼ାର ନ୍ୟାୟ ଠାକୁର । ଏବେ ବି ତାଙ୍କର ଅମାପ ଶକ୍ତିରେ ମାହିମାଗଡ଼ାର ଲୋକେ ମହିମ ହୁଅନ୍ତି । ଯେଉଁମାନେ କରନ୍ତି । ସମ୍ପନ୍ନ ସେ ତାଙ୍କ ଦେଇ ଆଦରେ ପାଆନ୍ତି । କେବେ ଅଧିକାର ସେଇ ଚେଷ୍ଟା ଦେଲେ ଏବଂ କଷ୍ଟ ଲଭିନ୍ତି । ରାତି ହେଲେ ସେ ସ୍ୱପ୍ନରେ ଦେଖାଦେଇ ନଥାନ୍ତି । ପୂଣ୍ୟ ଜଳେ ସେ ବରଦାନ ଦେଉଥାନ୍ତି । ସାଧନା କଲେ ସେ ଦର୍ଶନ ଦେଇଥାନ୍ତି । ଚମତ୍କାର ଦଣ୍ଡ ଦେଉଥାନ୍ତି । କେତେ ବର୍ଷ ହେଲା ସାଧୁ ମହାନ୍ତ ଲକ୍ଷ୍ୟ କରୁଥିଲେ ଏସବୁ କଥା ସୂର୍ଯ୍ୟାଲୋକରେ ଶୋଷୀ ସାଧୁ ମହାନ୍ତଙ୍କ ମନର ଆକାଶରୁ ବୁଦ୍ଧି ଚାଲି ଯାଇଥିଲା ସବୁ । ପଥର ଘର ଠାକୁରଙ୍କ ପରୀକ୍ଷା ଏସବୁ । "ନାରାୟଣ ଏ, ଭଣି ପାଅ ନାହିଁ ।"

"ଜାଗିବାକୁ ଆଉ କ'ଣ ଅଛି ବାକି ଦାଦା ?"

"କାହିଁ ଜାଗିବ ପୁଅ ପରିବର୍ତ୍ତନ, ସମସ୍ତ ପରିବର୍ତ୍ତନ ।

"ଦାଦା ପରିବର୍ତ୍ତନ କେଉଁ ସୂତ୍ରରେ ଆସିଲା ? ମୂଳ କଥାର କିଛି ପରିବର୍ତ୍ତନ ଘଟେନାହିଁ । ଏଠିବି କାନ୍ଥ ମୂଳ ତ ଚଳନ୍ତି ଚଳନ୍ତି ।"

Digitized by PPRACHIN, SOA

ନାହିଁରେ ସୃଷ୍ଟ ମୂଳ ଠିକ ଅଛି । ତଣ୍ଟିରଣ୍ଟେ ଦେଖ । ଅଜର ଧୂଳ ଚୂଳ କେତେ କଦଳକରୁନାହିଁ । ଆମେ ତ ସୂଚୁଣା ଦେଇ ରହିଛେ ତେଣୁ ଏବୁ କରୁଛ କୂଆଁ ।

ମହାରାଣାଙ୍କ ମନକୁ କଥାଟା ଜମୁ ଚାଲ ନ ଥିଲା । ଉତ୍ତର ଭଭଲା ଯେ ପିନ୍ଧୁଥିଲ ସବୁରକୁ ଅଗି ସେ ଫ୍ୟାଣ୍ଟ ସାର୍ଟ ପିନ୍ଧିଲ । ତା ବୋଲି କ'ଣ ସେ ତାଙ୍କୁ ତାହାର ସମ୍ମାନ ଦେବ ନାହିଁ ! ମାଆଙ୍କୁ ପୂଜା କରି ଶିଖିବ ନାହିଁ ! ଜଳରୁ ବାହାରୁଥିବା ଜନସ୍ଥ ତଉ ତ ମଣିଷର ସଭ୍ୟତା ନୁହେଁ । ପାର୍ଶ୍ୱିକ ପରିଚ୍ଛଦରେ ତ ତାର ପ୍ରକାଶ ଘଟେ ନାହିଁ । ସାଧୁ ମହାତ୍ମା ବୁଝାଉଥିଲେ, "ମଣିଷର ମୌଳିକ ସଭ୍ୟତା ପ୍ରେମ, ଶ୍ରଦ୍ଧା ଓ ତ୍ୟାଗ ମଣ୍ଡିତ ମହାନ ମନକଟତା ଉପରେ ପ୍ରତିଷ୍ଠିତ । ସଭ୍ୟତାର ଲକ୍ଷ୍ୟ ନୁହେଁ କେବଳ ମାନସିକ ବା ଶାରୀରିକ ପ୍ରକାଶ । ତାହାର ଏକମାତ୍ର ଲକ୍ଷ୍ୟ ହେଲା ମଣିଷ ପ୍ରାଣରେ ମଣିଷକୁ ବା ଦେବତ୍ୱ ପ୍ରତିଷ୍ଠା । ଗଛର ବକଳ ପିନ୍ଧୁ, ଚ ଛାଲ ବା ବାଘ ଚମଡ଼ାର ପୋଷାକ ପିନ୍ଧୁ । ସର୍ବାଙ୍ଗ ଆବୃତ କରୁ ବା ମିହି ପୋଷାକ ପିନ୍ଧୁ—ଏସବୁ ଅନ୍ତତ ମଣିଷ ପ୍ରାଣରେ ସଭ୍ୟତାର ସଂପର୍କ ନ ମାନେ । ଏ ପ୍ରାଣର ସଭ୍ୟତା ଅବଚ୍ଛିନ ଭାବେ ବଞ୍ଚି ରହିଛି ଯୁଗଯୁଗ ଧରି । ଏ ପୋଷାକ କେତେବେଳେ ପୂର୍ତ୍ତିଗର୍ଭ ନଗ୍ନ ଲଜ୍ଜା, କେତେବେଳେ ବୈଶାଖର ଝାଳ ଚର୍ବି ବା କେତେବେଳେ ପଉଷ ରାତ୍ରି ପଦ ମୋଟେ ନ ବୁଝନ୍ତା ମଣିଷ କ'ଣ ବଞ୍ଚି ପାରନ୍ତା ? ଆମେ ମୂଳ ସଂପର୍କଟି କେଉଁଠାରେ ଭୁଲିନାହୁଁ । ସେ ତ ଅଭୁଲା । କହୁଥାଉ ତାହିଁକି ତୁମେ ମୋ ଉପରେ ଅସନ୍ତୋଷ ରଖିଛ ? କହ ଜାଣିବ ତାହିଁକି ତୁମର ଏ ମନସ୍ତାପ ଆଜିର ଏ ଯୁଗର ପିଲାମାନଙ୍କ ପାଇଁ ? ମ ... ଭଗନା ପିଲାମାନେ ଏ ଯୁଗର

Digitized by PPRACHIN, SOA

ଶିକ୍ଷକମାନେ । ଅନ୍ଧ ପୁରୁଷ ଦାର୍ଶନିକମାନେ ସେମାନଙ୍କ କର୍ତ୍ତବ୍ୟ ନିର୍ଦ୍ଧାରିବେ । “ଯେଉଁମାନଙ୍କ ଜ୍ଞାନ ଅଛି ତାଙ୍କୁ ଆମକୁ ବାହାର କରିବାକୁ ଦେବ ।”

ସାଧୁ ମହାତ୍ମାଙ୍କର କଥାର ଭିତରେ ଉତ୍ତାପ ଥିଲା । ସେ ‘ଉତ୍ତାପ’ର ପୁଲକରେ ଥରେ ଥରେ ଥରାଉଥିଲେ ମହାରଣୀଏ । ଏଇ ବୃଦ୍ଧଙ୍କର ପ୍ରତ୍ୟେକ କଥା ଯେ ମାଜି ଅସିଛନ୍ତି । କହୁ ଏକର ଅଭ୍ୟାସରୁ ନୁହେଁ । ଏକ ବିଶ୍ୱାସରେ ଯେଉଁ ବିଶ୍ୱାସରେ ସେ ପ୍ରମାଣ କରାନ୍ତି ଉପନିଷଦରୁ । ସାଧୁ ମହାତ୍ମା କହୁଥିଲେ, “ଯେଉଁମାନଙ୍କ ଜ୍ଞାନ ଅଛି ।” ସେ ଶାନ୍ତି କଏ ବାହାର କରିବ ? କେଉଁ ଶାସ୍ତ୍ରରେ ତାହା ଲେଖାହୋଇଛି ! ବେଦ, ପୁରାଣ, ସଂହିତା ନା ଜ୍ୟୋତିଷ ଶାସ୍ତ୍ରରେ । ବୌଦ୍ଧ, ଖ୍ରୀଷ୍ଟିୟାନ୍ ନା ଇସଲାମ—କେଉଁ ଧର୍ମରେ ଏ ପଥର ମର୍ଯ୍ୟାଦା ହୋଇଛି ? ଅଛି କ’ଣ ତାହାଙ୍କର ତନ୍ତ୍ର ମନ୍ତ୍ରରେ !’ ମଣିଷର ଦୁଃଖ ଦୂର କରିବା ପାଇଁ ସେସବୁ ଶାସ୍ତ୍ର ମହାପୁରୁଷରେ ସୃଷ୍ଟି । କିନ୍ତୁ ଏସବୁ ଆଜି ଆଉ ମଣିଷ ଅବସ୍ଥା ଅର ନଜର ସର୍ବନାଶ କରୁଛି । ସାଧୁ ମହାତ୍ମା ଠିକ୍ କହୁଛନ୍ତି । “ମଣିଷ ପ୍ରାଣର ସତ୍ୟତା ହିଁ ଠିକ୍ ସତ୍ୟତା ।” ଏଇ ଶାସ୍ତ୍ର ପୁରାଣ ସେଇ ପ୍ରାଣର କେତେ କେତେ କାହାଣୀ, ପୂର୍ଣ୍ଣ କାହାଣୀ ନୁହେଁ । ଯେଉଁଦିନ ପୂର୍ଣ୍ଣ କାହାଣୀ ଲେଖାହେବ ସେଦିନ ମଣିଷ ଦେବତ୍ୱ ଅଧିକାରୀ ହେବ କିନ୍ତୁ ସେ ଦିନ କେବେ ଆସିବ ?

Digitized by PPRACHIN, SOA

ସେଦିନ ଆସିବ କି ନାହିଁ । କିଏ ଜାଣେ ?

କିନ୍ତୁ ସେ ଦିନ ଆସିବା ପୂର୍ବରୁ ଘଟଣାଟିଏ । ଘଟଣାଟି ସାମାନ୍ୟ । କିନ୍ତୁ ସାଧୁ ମହାତ୍ମାଙ୍କର ଜୀବନରେ ତାହା ଥିଲା ଜଡ଼ାଇ ଆକସ୍ମିକ । ଦ୍ୱର୍ଗତ ନାଥ ଦାସଙ୍କ ଦୁଇ ପୁଅଙ୍କ ମଧ୍ୟରେ ବହୁ ଦିନରୁ ମନୋମାଳିନ୍ୟ ଥିଲା । ଏକ ସମୟରେ ଦୁଇ ଭାଇ ଯେ ଦେହୁର ତାଙ୍କୁ ପୃଥକ୍ ହୋଇଯିବ ଏ କଥା କେହି ଭାବି ନ ଥିଲେ । ସାଧୁ ମହାତ୍ମା ଭାବୁଥିଲେ ଘା'ର ଏକାଠ ମୀମାଂସା ପୃଥକ୍ ହେବା । ଭାବୁଭାବୁ ସେ ସିଦ୍ଧାନ୍ତରେ ପହଞ୍ଚିଥିଲେ । ଏ ତ ପୃଥିବୀର ଅତି ସାଧାରଣ କଥା । ନାଥ ଦାସଙ୍କ ପରିବାରରେ ଏ ଘଟଣା ଘଟିଛି, ତେଣୁ ଲୋକେ ହସିବେ । କିନ୍ତୁ ଲୋକେ ହସିବେ କହି ନ ବୁଝି । ବେଢ଼ି ଘରର ଭିତରେ ସାନ ଘର କେବେ ଲୁଚାଏ ନାହିଁ । ଏଇ ପ୍ରାକୃତିକ ନିୟମ ତ ମିଥ୍ୟା କେବେ ହୁଏନି । ନାଥ ଦାସଙ୍କର ବଡ଼ ପୁଅ ମାଧୁଧର କର୍ମନିଷ୍ଠ, ସଦାଶୀ । କିନ୍ତୁ ସବୁ କଥାରେ ସେ ଉଦାସୀ । ସାନ ଭାଇର ଅବସ୍ଥା ବୁଝିବାକୁ ତାର ଲେଶ କି ଆଗ୍ରହ ନ ଥାଏ । ଏଇ କଥା ହିଁ କହେ କରୁଣା—ନାଥ ଦାସଙ୍କ ସାନ ପୁଅ । ସାଧୁ ମହାତ୍ମା ବିଚାର କରି ଦେଖୁଥିଲେ । କରୁଣା ହୁଏତ ଠିକ କହୁଛି ବଡ଼ ନଦୀରୁ ଶାଖା ନଦୀ ବାହାରେ । ଶାଖା ନଦୀର ନିଆରା ହୁଏ । ଘରବାର ଭାଗ ଭାଗ ହୋଇ ନୂଆ ପରିବାର ଗଢ଼ିଉଠେ । ଗୋଟିକରୁ ଅନେକ । ପ୍ରା ଭିତରେ ବି ଆଶୀର୍ବାଦ ଅଛି

Digitized by PPRACHIN, SOA

ଭଗବାନଙ୍କର । ନୂଆ ଟେବାଘର ନୂଆ ସଂକଳ୍ପ, ନୂଆ
ଉଦ୍ୟୋଗ । ରାତ୍ର ଅନ୍ଧରେ କେତେ ନୂଆକଥା ଚିନ୍ତିଲେ । ନାଁ
ଦେବେ ସେମିତି । ଜଣେ ସଜ୍ଜନଙ୍କର ଜୀବନର ବହୁ ବେଳର ସ୍ୱାଧୀନ
ମନୋବୃତ୍ତି ନଷ୍ଟ ହେଇ ଯାଏନା । ମାପ୍ୟାଥର ବନ୍ଧୁଛି ତା ଘରର ସମ୍ମାନ
ହେଲ ଏକାଠି ରହିବା ଜନ୍ମ ତା ଘରର ସନ୍ତାନ ଙ୍କଣ ଜଣେ
ହଲରେ ରହିବ, ଆଜି ଜଣେ ରହିବ ପର ଦେଉଧ୍ୱ ଚଉ । ମଧ୍ୟ ଧର
ଛୁଟିବାକୁ ପ୍ରସ୍ତୁତ ନୁହେଁ । କିନ୍ତୁ କରୁଣା କେତେଦିନ ଏପରି
ଖଟିଥିବ । ସାଧୁ ମହାତ୍ମାଙ୍କର ଏମନ୍ତ କଷ୍ଟଂତେ ଥିଲେ
ନାଥ ଦାସ । କିନ୍ତୁ ମାପ୍ୟାଥର ଭଲୁଅଛେ ଏ ସାଧୁ ମହାତ୍ମା ତାଙ୍କର
ଖୁଣ୍ଟରା ଠ୍ୟାକଠର । ସେ ଖୁଦା ମନା ଦେଉଁଦେଇ, "ତିନ୍ତୁ ଅଜିତ
ଖଂପତ୍ତିରୁ ଯାହା କିଛି ଦୁଇ ମାଣ ପାଇବ କରୁଣା ତାର ଭାଗ୍ୟ
ଅନୁସାରରେ । କିନ୍ତୁ ସ୍ୱଅର୍ଜିତ ସମ୍ପତ୍ତିରୁ ବାଡ଼ ଅଗରେ ଗୋଟିଏ ମଧ୍ୟ
ପାଇବ ନାହିଁ ।"

ମଢର ବେଡ଼ାରେ ବଗୁର ବୁଲୁଛି···। ସାଧୁ ମହାତ୍ମାଙ୍କ
ପାଖରେ ବୃଦ୍ଧ ବୈଦ୍ୟନାଥ ମହାରଣା ବସିଛନ୍ତି ଗମ୍ଭୀର ହୋଇ ।
ମାଳ ସାହିର ମନୋହର ମହାପାତ୍ର ବାସୁଣ୍ଡା ଜେଦକୁ ଅଭଳ
ବସିଛନ୍ତି । ସାହିର ଆଉ ପାଞ୍ଚଜଣ ହେଲେ—ଅଚ୍ୟୁତ ଦାସ, ମଦନ
ମହାନ୍ତି, ଘୋଷାଳ ସେଠି, ବାମନ ବେହେରା ଓ ଧରମୁ ଜେନା ।
ସାଧୁ ମହାତ୍ମାଙ୍କ ସାମ୍ନାରେ ଅର୍ଦ୍ଧମଣ୍ଡଳାକାରରେ ବସିଛନ୍ତି ଏମାନେ ।
ମହାତ୍ମାଏ ଘଡ଼ ବନ୍ଦିଲେ ଆକାଶକୁ । ବାସୁଣ୍ଡା ଜଳଦକୁ ଘଣ୍ଟି
ହାତପାଉ ବସିଛି କରୁଣା । ମଢର ବାଟେଣ୍ଟା ତଳେ ବସି ଧାମ୍ବାନର
ବାବୁ ବୃକ୍ଷରହାସେ । ଅନ୍ୟ ମନେ ଖୁବ ଦେଖାଇ ପଦ୍ମ ଭଜନା
ଥାଏ ସଙ୍ଗଆଡ଼େ ।

Digitized by PPRACHIN, SOA

ବୁଢ଼ା କହିଲେ—"ମାୟାଧର, ମୋର ବାଳ ସବୁ ଧୂଳିରେ ପାଚିଛି । ନୂଆ ପରିବାର ତୋଳିଛୁ—ଏହା ଦେଖିଛୁ ସଦାଚାର ନଷ୍ଟ । ତୁମେ ଚାହୁଁଛ ସମସ୍ତେ ଏକାଠି ରହିବେ । ଏଇଟା ଭଲ ଖୁବ ଭଲ କଥା । ଏକାଠି ମିଳିମିଶି ରହିବାଠୁ ଆଉ ଭଲକଥା ଆଉ ନାହିଁ । କିନ୍ତୁ ପାଣ୍ଡବ କୌରବ ତ ରହି ପାରି ନାହାନ୍ତି । କୌରବଙ୍କର କ'ଣ ଅଭାବ ଥିଲା । ପାଣ୍ଡବ କ'ଣ ସବୁ ତ୍ୟାଗ କରି ପାରି ନଥାନ୍ତେ ? ତେବେ ଏତେ ଭୟଙ୍କର କଥା ଆସିଲା କାହିଁକି ? କୌରବ ପାଣ୍ଡବ ଯୁଦ୍ଧ ତ ସେଇ ସ୍ୱାର୍ଥ ଲାଗି ।"

ମାୟାଧର ଉତ୍ତର ଦେଲା—"ଆପଣ ଗ୍ରାମର ଜଣେ ମୁଖ୍ୟ ବ୍ୟକ୍ତି । ମୋର ବାପାଙ୍କର ସଙ୍ଗୀ ଓ ମୋର ଜେଜେ ସଖା । ଆପଣ ଆମର ପରିବାରକୁ ଚିହ୍ନି ନାହାନ୍ତି ? ଆଉ ଆପଣ କ'ଣ ଜାଣି ନାହାନ୍ତି ଯେଉଁ ପରିବାରରେ ସମସ୍ତେ ଏକାଠି ରହନ୍ତି ସେଠି ସ୍ୱର୍ଗ ଓହ୍ଲାଇ ଆସେ ।"

ସାଧୁ କହାନ୍ତି—"ଆପେ ନିଶ୍ଚୟ । ଭାଇ ଭାଇ ଭିତରେ ପ୍ରେମ ଥିଲେ, ଯାଆ ଯାଆ ଭିତରେ ଆନ୍ତରିକ ମିଳନ ସମ୍ଭବ ହେଉଥିଲେ ଏ ମର୍ତ୍ତ୍ୟ ସ୍ୱର୍ଗରେ ପରିଣତ ହେବ । କିନ୍ତୁ କରୁଣା ଓ ଭୂମ ଭିତରେ ସେ ସମ୍ପର୍କ ତ ଆଉ ନାହିଁ ।

ମାୟାଧର—"ସେ ସମ୍ପର୍କ ରକ୍ଷିବା ଦରକାର କରୁଛି । ଅନ୍ତତଃ ବୁଝନ୍ତୁ ଯେ ସ୍ୱୀକାର କରି ନପାରେ ସେ କପରି ସମ୍ପର୍କ ରକ୍ଷା କରି ପାରିବ । ଆପଣ ତ ଜାଣନ୍ତି କି ଅବସ୍ଥାରୁ ମୁଁ ଏ ଘରକୁ ଉଠାଇଛୁ ।"

ସାଧୁ—'ସ୍ୱୀକାର କରୁଛି, ତୁମର ଦାନ ଏ ପରିବାର ପ୍ରତି ଅସାଧାରଣ । କିନ୍ତୁ ତୁମେ ଏ ସବୁ କାହିଁକି କରି ଦେଇ ପାରିବ ?"

Digitized by PPRACHIN, SOA

ମାଧ୍ୱାଧର--"ବାପା ଏସବୁ ମୋତେ ଦେଇଗଲେ । ଭଉଣୀମାନଙ୍କର ବାହାଘର, ଘରର ଉଦଯୋଗ ଏସବୁ ମୋ ଉପରେ ଛାଡ଼ି ସେ ଖୁସିଗଲେ । ମୁଁ ଯଦି ଏସବୁ ଦାୟିତ୍ୱ ନେଇ ନ ଥାନ୍ତି ?"

ସାଧୁ —"ମୁଁ ଦେଖୁଛି ତ, ଜାଣିକି ନେଇ କେବେ ପ୍ରଶ୍ନ କରିଛ ନିଜକୁ ?"

ମାଧ୍ୱାଧର —"ମୁଁ କରିବି କ'ଣ । କିନ୍ତୁ କଏ ଘଟିଥିଲା ଘରି ବଡ଼ ହୋଇ ଘର ଖୋଜିବ !"

ସାଧୁ—"ତୁମେ କେଉଁଠାରେ ନିଜକୁ ସେ ପ୍ରଶ୍ନ ପଚାରି ନାହଁ । ତୁମେ ଯଦି କେବେ ନିଜକୁ ପଚାରିଥାନ୍ତ ତେବେ ଉତ୍ତର ପାଇଥାନ୍ତ- ପରିବାରର ମଙ୍ଗଳ ପାଇଁ ତୁମେ ସେ ସବୁ କରିଥିଲ ।"

ମାଧ୍ୱାଧର ବୁଝିଲା । ତା'ର ମତାମତ ଅତି ସାଧାରଣଭାବେ କହିଥାନ୍ତା କହିଗଲେ । ସେଠି ପ୍ରଶ୍ନର ତାତ୍ପର୍ଯ୍ୟ ନାହିଁ । କିନ୍ତୁ ଏ ବାକ୍ୟର ଅନ୍ୟ କିଛି ଅର୍ଥ ଥାଇ ପାରେ । ପଶ୍ଚାତ୍ପଟରେ ବୁଢ଼ା ଏମିତି ଦୃଢ଼ଚିତ୍ତ ଭାବ ତା'ରମୁହଁର ଦେଖାଯାଉଛି । ମାଧ୍ୱାଧର ଭାବୁଥିଲା ପୁଅ'ପରେ କି ପ୍ରଶ୍ନ ଅଣିପାରେ ?

ବୁଢ଼ା ଉତ୍ତରିଲେ,—"ଧନର ଉପମେ ସାଧା କରି ପାରୁଥିଲ ଏବେ ଜାଣିନ ତାହା କରି ପାରିବ ନାହିଁ ତାର କାରଣ ମଧ୍ୟ ଅଜଣା ନୁହେଁ ।"

ସମସ୍ତେ ବୁଝିଲେ । ବୁଢ଼ା ପୁଣି କହିଲେ, "ତୁମ ପୁଅମାନେ ସ୍ୱବଶ ହେଲେଣି । ଝିଅମାନଙ୍କର ବିବାହ ସରିଲାଣି । ଏବେ ତୁମେ ଅର୍ଜନ କରିବାର କ୍ଷମତାରେ ନ ଥିଲେହେଁ ପୁଅମାନଙ୍କ କ୍ଷମତାରୁ ଘରର ଜୀବନ ଧାରାନୁଯାୟୀ ଯାବେ ପରିତୃପ୍ତ ହୋଇପାରିବ । ଯେବେ

Digitized by PPRACHIN, SOA

ତୁମ ଧନର ବଡ଼େଇ କଲେଣି । ତୁମକୁ ସ୍ୱୀକାର କଲେଣି । ତୁମେ ମଣୁଛ ଯଦି ତୁମର ଧନ ଧ୍ୱଂସ ହୁଏ ତୁମର ଅଭିମାନରେ ଆଘାତ ଲାଗିବ । ପରିବାରର ଲୋକେ ଚଳଚଳାନ୍ତ ହେବ । ନୁହେଁ କି ?"

ମାଧୁଧର—"ତେବେ ଉପାୟ କଣ ବୁଝୁଛ ?"

ସାଧୁ ମହାନ୍ତ ଉତ୍ତର ଦେଲେ—"କେହି ବୁଝିବେ ନାହିଁ । ସମସ୍ତଙ୍କର ସ୍ୱାର୍ଥ ଅଛି । କିନ୍ତୁ ତୁମେ ପରିବାର ହିତ ତୁମର ପ୍ରଧାନ କର୍ତ୍ତବ୍ୟ କ'ଣ ତାହା କେବେ ଚିନ୍ତା କରନାହିଁ । ତୁମ ହାତର ମୁଠିଏ ଅନ୍ନ ପାନ । ତାଙ୍କ ଶେଷଗାର ମଧ୍ୟ ଯାଇଛି । ବଡ଼ ଦୁଃଖର କଥା ହେଲେ ଶ୍ରେଷ୍ଠ ଚହର ଅବସ୍ଥା ଧରି ତୁମ ପାନ ଖାଇବ ପରିବାର ପୋଷଣ । ଏବେ ତାହାର ସଞ୍ଚିତାର ପାଇଁ ସ୍ୱାର୍ଥତ୍ୟାଗ କରିଥିବ ତାହା କେବଳ ତମ ଜୀବନ ରକ୍ଷା ପାଇଁ ନୋଳ; କେବେ ତରବେ ଯଦି ତୁମେ ଏବେ ନିଜ ଘରର ସ୍ୱାର୍ଥ ହିତ ସାଧନ ନ କର ।"

ମାଧୁଧର—'ବାବାଜି, ମୁଁ ତାର କୌଣସି ଖର୍ଚ୍ଚ କରିନାହିଁ । ତା ଖର୍ଚ୍ଚ ଦୋହିତ୍ର ସେ ଚଳୁଛନ୍ତି । ତାର ଖାଦ୍ୟର ଦରକାର । ତାର ମୁଣ୍ଡର ଗାଠପଡ଼ା ଦରକାର । ତାର ପିଲାଙ୍କର ଦେଖଣା ପାଇଁ ଖର୍ଚ୍ଚ ଦରକାର । ଏସବୁ ପାଇଁ ତ ମୁଁ ସଦାବେଳେ ଅର୍ଥ ଖୋଜ କରି ପାରୁନାହିଁ । ତେବେ ମାଇ ସେ ମୋତେ ଯାହା ଦିଏ ତାହା ନ ତା ନିଜ ପରିବା ପାଇଁ ଯଥେଷ୍ଟ ନୁହେଁ ।"

ସାଧୁ ମହାନ୍ତ କହିଲେ । "ମାଧୁଧର ପୃଥ୍ୱୀ ପଥ ଭୁଲିଗଲ । ସେତୁବନ୍ଧ ରାମେଶ୍ୱରର ହନୁମାନ ଓ ଜାମ୍ବବାନ ଆନନ୍ଦ ଲାଭ କରିଥିବେ । କିନ୍ତୁ ଗୃହସ୍ଥର ମୂଢ଼ ଭାବନା ସମୁଦ୍ରବନ୍ଧ ଆଖିରୁ ଦୂର ହେଲା ନାହିଁକି ।

Digitized by PPRACHIN, SOA

ମାଧ୍ୱାଧର—"ସେ ସୃଷ୍ଟିଶିମୂଷା ଠକ । ସେଥିଁ କନ ସ୍ଥା ଧ୍ୱାଚ୍ଛ କେବଳ ସମ୍ଭବ ନୁହେଁ ସେଥିରେ ଯେ ବାଧାଦୂଷ୍ଟ ନେବା ପାଇଁ ଚେଷ୍ଟା କରିବା ନିତାନ୍ତ ସ୍ୱାଭାବିକ । ଜଟଣୀର 'ଧଳା' ଦ୍ରେସିଡ଼େଣ୍ଟ ପଦପାଇଁ ଠିଆ ହେଲାଟିରି ।"

ସାଧୁ ମହାନ୍ତ—"ମାଧ୍ୱାଧର ଶୁଣ । ତୁମକୁ ଗୋଟିଏ ଗ୍ରେଟିଆ ଉଦାହରଣ ଦେବି । ସୃବ ବନ୍ଧୁ ଗଲେ ଜଙ୍ଗଲକୁ ଭାତ ପାଇଁ । ଜଂଗଲରେ ରନ୍ଧା ହେଲା । ଜଣେ ଗଲା ଡାଣ୍ଟ ପାଇଁ, ଜଣେ ଗଲା ଲୁଣ ପାଇଁ, ଜଣେ ଗଲା ଭାତ ଅଣି, ଜଣେ ହେଲା ପରିବା ଓ ଯୁଝିଲ । ରୋଷେଇ ହେଲା । ସମସ୍ତେ ଖାଇ ବସିଲେ । ମାଧ୍ୱାଧର, ତୁମେ ଏଠି କାହା ପେଟ ଭଣା ଭରିବ ? କାହାକୁ ବେଶି ଦେବ ? ସମସ୍ତଙ୍କୁ ସମାନ ପରିମାଣରେ ଖାଇବାକୁ ଦେବ କି ନାହିଁ ?

ମାଧ୍ୱାଧର ଉତ୍ତର ଦେଲା,—"ଯେ ଲୁଣ ଅଣିଛି ସେ କ'ଣ ଯୁଝିଲବାଲା ସଙ୍ଗେ ସମକକ୍ଷ ?"

ସାଧୁ ମହାନ୍ତ ତୀର୍ଯ୍ୟକ ଦୃଷ୍ଟିରେ ଅନାଇଲେ ମାଧ୍ୱାଧର ଆଡ଼େ ଥରେ । ସଭାରେ ସମସ୍ତେ ଚୁପ ଚାପ । କରୁଣା ଆଡ଼େ ଆଉ ଥରେ ନାହାନ୍ତି ସେ । ମହାରଣାଙ୍କୁ କହିଲେ—ସଭା ଭଂଗ ହେଉ ମହାରଣା ଏ ।"

ସେଦିନ କାହାର ପାଟିରୁ କଥା କାହାରି ନାହିଁ । ମାଟିଆପଡ଼ା ଗାଁର ଇତିହାସରେ ଏ ଘଟଣାଟି ଥିଲା ସଂପୂର୍ଣ୍ଣ ନୂଆ । ସାଧୁ ମହାନ୍ତଙ୍କର ତତ୍ତ୍ୱାବଧାନରେ ସବୁ ଯଥାଯଥ ଭାବେ ନ୍ୟାୟରେ ତୁଟେ । ଅଭିଧାନରେ ସାଧୁ ମହାନ୍ତ କହିଥିଲେ "ଆମ ସୁଖ ସହିଲା । ଯୁବକମାନେ ଏଣିକି ବିଦ୍ରୋହ କରିବେ । ମୋତେ ଏଥିରେ

ଅଛ ଉଠି ତର ନାହିଁ । ଶୀଘ୍ର ଚନ୍ଦନଗଛରେ ସାଧୁମହାନ୍ତ ସଙ୍ଗରୁ ଓହ୍ଲାଇଗଲେ । ଅଭଦ୍ରବାଦୀ ଲୋକଙ୍କୋଷ୍ଟ ଦୋଷ ଉଡ଼ନ୍ଥିଲା । ମନ୍ଦନ ସ୍ଥିର ହୋଇ ଯାଇଥିଲା ।

ସେତେବେଳେକୁ ମହାନ୍ତ ବୁଢ଼ା ପେଇଆସି ଶୋଇ ରହିଥିଲେ ଘରେ । ବୁଢ଼ୀର ପ୍ରଶ୍ନର କୌଣସି ଉତ୍ତର ନ ଦେଇ ସେ ମୁହଁ ମାଡ଼ି ଶୋଇଥିଲେ । ଅନ୍ଧାରର ଆକାଶରୁ ସୂର୍ଯ୍ୟ ଖସି ପଡ଼ୁଥିବା ବାହୁଣୀ ହୋଇଲୁ । ଆସ୍ତେ ଆସ୍ତେ ଆଖି ମେଲି ଚାହିଁଲା ବୁଢ଼ା । ଏ ଭିତରେ ନେଇ ଉଡ଼ିଯାଇଛି । କାରଣ୍ଡା ଛାଡ଼ି ସୂର୍ଯ୍ୟ କଷଣ ଦେଖି ବୁଢ଼ା ଉଠିଲା । ବୁଢ଼ୀର ସେଇ ମଧୁର କଥା, "ଆଜ ଏପରି ଶୋଇ ପଡ଼ିଲ ଏତେବେଳଯାଏଁ । ମୁଁ ସବୁ ଜାଣେ ଗୋ । ଆଉ ଆସନ୍ତା ଆସନ୍ତା ବାହିଁପାଇଁ । ଭଗବାନ ତ ମନୁଷ୍ୟଙ୍କୁ ଉପା ଭକ୍ତ ପ୍ରାଣ ନ ଥିଲେ ।" ବାକ୍ୟବାଣ ଉପରେ ବୁଢ଼ା ହାତ ଦେଲା । ମୃତ୍ୟୁରେ ସେ ବୁଢ଼ା ହୋଇଯାଇଛି । ଖାଲି ବୁଢ଼ା । ଅନ୍ୟମନସ୍କଭାବେ ବୁଢ଼ା ଖୁଲୁଛି । ସୋଷସ୍ଥ ବୁଢ଼ାର ଅଣ୍ଟା ଚଳନରେ ଅଟକି ଯାଉଛି । ମନେ ପଡ଼ିଲା ତାର ବୁଢ଼ୀ ବ୍ୟସ୍ତ ହେବଣି ।

Digitized by PPRACHIN, SOA

ଆଶ୍ୱିନର ସବୁଜ କେଦାର । ପୂର୍ବ ପଶ୍ଚିମ ଅସୁମାରି । ବେଳେ ବେଳେ ପବନର ଧୂଅରେ ଲହଡ଼ି ଭଳି ଦେଖାଯାଉଛି ଧାନ କିଆରୀ, ମାଟିଆଖଡ଼ାର ଚାଷୀ ପ୍ରାଣର ଆକୁଳତା ବାହାରେ ପଡ଼ି । ଧାନ ଫେଣ୍ଟା ଲମ୍ବିଛି । ଦୁଇଟି ସେନ ଲକେନ ମନ୍ଦିରର ଛ ଚୂଡ଼ାଭାଉ ସବୁଜ ଅରଣ୍ୟ । କାଲି କାର୍ତ୍ତି, ତିଥ ଦାର୍ଣ୍ଣ । ଲକ୍ଷ୍ମ ଦେଖିଛି ସମ୍ବତେ ଏଥିରୁ ସେପଟକୁ ଦେଖା ଯାଇ—ମାଆର ଅଞ୍ଚଳଟିଏ ଯେ । ଦୂରରେ ଦୁଇଟି ଓଟେଇ ଗାଈ ଧାନ ଗଛ ଖାଉଛନ୍ତି । ଗାଈଆଳ ଟୋକାଟା ଅନ୍ୟ ମନସ୍କ ହୋଇଯାଇଛି । ଦୂରରୁ ଶୁଭୁଛି ଟ୍ରେନଗାଡ଼ି ଶବ୍ଦ । କୋଉଠୁ ଆଉ ଜଣେ ଖବର ପାଇଥିବ ଆଣ୍ଡ ଫ୍ଳେଜର ଇଞ୍ଜିନ ସ୍ଥଳବ । ପେଟ୍ରୋଲ ଇଂଜିନ୍ ପାଖୁ ଡ଼ିଜେଲ ଇଞ୍ଜିନ୍‌ଟା ବହୁତ ବଡ଼ । ଏକ ଲହୁରେ ସେ ସ୍ପଷ୍ଟିଛି ଦକ୍ଷିଣ ଦରକୁ । ବାଟେଣୀ ପାର ହୋଇ ଇଞ୍ଜିନଟା ଅଦୃଶ୍ୟ ହୋଇଯାଏ । ମହାରଣା ପାଟି କଲେ, "ଜଗେ ରଣା, ଗାଈ ଖାଇଗଲେ ଧାନ ।"

ରଣା କିନ୍ତୁ ଶୁଣୁନି । ଏଥର ଇଞ୍ଜିନ୍‌ଟା ମାଞ୍ଝିପଡ଼ିବ । କୋଠା କେଉଁ କେଉଁ ଶବ୍ଦ । ଆଉ ଦିନ ଏ ଗାଁରେ ଗାଈଗୋରୁ ରକ୍ଷା ପାଇବେ ! ତାକୁ ବୋଧେ ଜଙ୍ଗଲକୁ ନେଇଯିବାକୁ ହେବ ଗୋଠ । ମହାରଣା ଚିତ୍କାର ପାଟି କଲେ, "ରଣା ଶୁଣୁନି ।"

'ଓଃ ନେନେ, ଆଉ ନାଁ ଏଠି ରହିବା ହେବନି । ଦେଖନ ଏଡ ଶୁଣ୍ଢଶୁଣ୍ଢ ଗାଈବାଛୁରୀଙ୍କ ମେଞ୍ଚ ଭିତରକୁ ପଶିଗଲେ ଗୁମ୍ଫାଅଁରେ ।

ମହାରାଣୀ କହିଲେ— ଗାଈ ବାଛୁରୀ ତ ସବୁଦିନେ ଏଡ ଶୁଣ୍ଢଶୁଣ୍ଢ । ଆଜିକାଲି ତମମାନଙ୍କ କଣ୍ଠ ଶୁଖୁନାହିଁ ।';

ରାଜା ଏ କଥାରେ ତାଙ୍କ ପଟାକୁ ଅଲ୍ଲେଇ ଆଣି ସାନ୍ତ୍ୱନ୍ତି । କିନ୍ତୁ ଭଉଣୀ ପୁଣି ତା'ର ଅନ୍ୟ କଥା ଲଗିରହିଛି ।

'ନେନେ, ତ'ର ଗୋଡ଼ଟା ଭିଡ଼ିଗଲା ବୋଧହୁଏ ।'

ମହାରାଣୀ କୌତୁହଳୀ ହୋଇ ଚାହିଁଲେ, 'ଏଁ ।'

'ଦେଖନ, ଆମ୍ଭର କାହିଁକି । ସେ ଯେତେ ଯୋରରେ ମାଡ଼ ପଡ଼ିଥିବ ସେଥିରେ କଏ କେମିତି ଶୀଘ୍ର ଭଲ ହେବ କହନ ? ଭଗବାନଙ୍କଠୁ ଜୋରରେ ପିଟି ଦେ ।'

ମହାରାଣୀ କହିଲେ—'ତଳରେ କାହା କଥା କହୁଛୁ ?

'ନେନେ ଜାଣିପାରୁନ, ଆମ ଗାଁ ସାଇ ଲୋକେ ସମସ୍ତେ ଜାଣିଲେଣି ।' ସବଜାନତା ଭଳି ହସିଦେଇ ସେ ପୁଣି କହିଲା— 'ନେନେ ଝିଙ୍କେଲ ଲଣ୍ଠନ ଆସୁଛି ।'

'ଝିଙ୍କେଲ ଲଣ୍ଠନ ! କୋଉଠି ଏବେ ଝିଙ୍କେଲ ଗୋଟେ ଜାଳେଣି । ଯୋଉଥିରେ ଝିଙ୍କେଲ ତେଲ ଦେଉଥିବ ସେଇଟା ଝିଙ୍କେଲ ଲଣ୍ଠନ ।'

'ହାଇଁ, ନେନେ, ଝିଙ୍କେଲ ଗୋଟାଏ ଲଣ୍ଠନ ସଙ୍ଗାକୁ ତଳାରେ ମାଲିକ ପିଟ ।'

'ଚୋ ମୂଣ୍ଡ ଗଣ୍ଡି । ଆଠ ଗଣ୍ଡା ପିଲଙ୍କୁ ଚୁଙ୍କର ଜାଣିବୁ ।'

Digitized by PPRACHIN, SOA

ବଡ଼ା ମୁଣ୍ଡିଆଙ୍କ କଥା ଏ କଥା ପଶୁ ନଥିଲା । ମହାରଣାଏ ଆଉ ଥରେ ଚାହିଁଲା ବଳେ । ଓ ଭଗବାନଙ୍କୁ ଜଣା । କଟେରୁ କଥାଗୁ ଭିତରେ ପଶି ସବୁ ଖାଇଯିବେ । ବଡ଼ ଧୂର୍ତ୍ତ ଥିଲ ଖଟେଣୀ ଆଜ୍ଞା । ମହାରଣାଏ ବୁଲିଥିଲେ ବୃନ୍ଦାରେ ବାଇଗରେ । ମନେ ପଡ଼ିଥିଲ ଚାଳିଆ ଘଟଣା । ସାଧୁ ମହାନ୍ତଙ୍କର ପରିବାର ତାଙ୍କ ଜନର ପରିଚୟ । ସାଧୁ ମହାନ୍ତଙ୍କୁ ଦେଖା ଭଲଭାବେ ଭଲ, କିନ୍ତୁ ଏଏ ଯେପରି ଲଗୁଛି ଯାଉଛି ଜନ ଭିତରେ । ମାଧୁ ଧରଙ୍କ ଗିଆ ନାଁ ଦାସଙ୍କର ବାପା ବୁଝନ୍ତି ସାଧୁ ମହାନ୍ତ । ମନେ ପଡ଼ୁଛି ମହାରଣାଙ୍କର । ନାଥ ଦାସ ଗାଁର ମୁଖିଆ ଥିଲେ ସତ । କିନ୍ତୁ ସାଧୁ ମହାନ୍ତ ଥିଲେ ପ୍ରକୃତ ମୁଖ୍ୟ । ସାଧୁ ମହାନ୍ତଙ୍କୁ ଏଥିପାଇଁ ସେ କେତେ ଈର୍ଷା କରି ନାହାନ୍ତି ବସୁଥିରେ ଲଭୟେ ପଶାଯାଇ । ଜେତେ ପୂର୍ବ ବଳଭ ବସିଥିଲେ । ସେହି ବଳଭ ଉପରେ ବଡ଼ ଖଣ୍ଡିଏ ତାଙ୍କ ଗାଁରେ ଏଇ ଦୁଇଟି ବଂଶପରମ୍ପରା ପରିବାରଙ୍କ ଭୁଇଁରେ ଅନେକ ଧନ ମଧ ଥିଲେ । କିନ୍ତୁ ପ୍ରାଚୀନ ପରମ୍ପରା ଲାଗି ଏ ଦୁଇଟି ପରିବାର ପୁରୁଷ ପୁରୁଷ ଧରି ଗାଁର ଅଗ୍ରଣୀ ପରିବାର ହୋଇ ରହିଥିଲେ । ଆଜି କିନ୍ତୁ ସମୟ ବଦଳି ଯାଉଛି । ମାଧୁ ଧରର କନ୍ୟା ଆଜି ସେ ସମ୍ମାନ ପାଇ ଭରିଦାକୁ ନାହାନ୍ତି । ମହାରଣାଙ୍କ ପାଠ ପଢ଼ୁଆ ପିଲାମାନେ କୁହନ୍ତି— 'ବୃଦ୍ଧିକାଳରେ ବାଳିଆ ପିଟିବା ଜାଣ ଏମାନେ । ସଭାଙ୍କ ଆମଳରେ ଝଗଡ଼ିଲୁ ଭଲ ପଦପଦକା ପାଉଥିଲେ । ଦେଶଅପାଇଁ ଯାଉଥିଲେ ଜାଗିଲା । ସୃଷ୍ଟି ନୂଆ ଆସିଲା ସେତେବେଳେ ଖଜାନାର ସୁନା ଦେଇ ଲାଗିଥିଲା ଦେବାକୁ ଆଉରି ଅସିଲେ ନାହିଁ । ଏ ଦେଖୁଛି ସେଇ ଯୁଗ । ଯେମାନେ ଏଠିକି ଆସିବେ । ସବୁ ଜାଣିଲା ଲୋକେ ଏଣିକି ଉଠିଲେଣି । ସମସ୍ତେ ଜାଣିଲେଣି ଠାକୁରଙ୍କ କିଛି ଦରକାର ନାହିଁ । ତାହାକୁ ଏବେ ଠକ ଆଉନା ? ଏକ ପରେ ଦୁଇ, ଦୁଇ ପରେ ତିନ

Digitized by PPRACHIN, SOA

ସୁସ୍ଥ ଏକଥା କଏ ଆଜିଯାଏ କହିଛି ? ଯେଉଁମାନେ ଉପରେ ଥିଲେ ସେମାନେ ତଳକୁ ଯିବେ । ଆଜିର ମୁରବି ଧରି ତଳେ ପଡ଼ନ୍ତୁ । ଅନ୍ୟମାନଙ୍କୁ ତଳେ ନ ପକାଇଲେ ଆମର ଶାନ୍ତି ନାହିଁ ।' ମହାରଣୀଏ ଏ କଥାର ମରମ ବୁଝନ୍ତୁ । ପାଠ ପଢ଼ୁଆ ପିଲାଙ୍କୁ ବୁଝାଇବ କିଏ ? କିଏ କ'ଣ ଶୁଣେ, କିଏ ପୁଣି କ'ଣ କହୁଛି । ସାଧୁ ମହାତ୍ମା କୁହନ୍ତି, "ଦୁନିଆ କେବଳ ବଦଳି ଯାଉଛି ବାହାରର ଦୃଶ୍ୟ । ଭିତରଟା ବଦଳିବା ଦରକାର । ବଦଳାଇବ କିଏ ।" ଜଣେ କିଏ ଉଠୁଛି, ପଡ଼ୁଛି । ଯେ ପଡ଼ୁଛି, ସେ ଉଠିବ । କିନ୍ତୁ ଏ ଉଠାପଡ଼ା ଭିତରେ ମଣିଷ ନିଜର କ'ଣ ? ଗୋଲ ମନ୍ଦିରକୁ ହିଂସା କେହିବା । ପିଲାମାନଙ୍କର ଆଖିକୁ ଶୁଦ୍ଧ ମନରେ ଗ୍ରହଣ କରିବାକୁ ନ ଥିଲେ ମହାରଣୀଏ । ଶିକ୍ଷା ମଣିଷକୁ ଉନ୍ନତ କରେ । ଶିକ୍ଷା ମଣିଷକୁ ଜଗତକୁ ବୁଝିବାର ଜ୍ଞାନ ପ୍ରଦାନ କରେ । ଏଇ ଧାରଣା ଥିଲା ମହାରଣୀଙ୍କର । କିନ୍ତୁ ଯାହାର ଉଦ୍ଦେଶ୍ୟ ପରଂପରା ନାହିଁ ତା ପାଇଁ ଏ ଶିକ୍ଷା କେବଳ ମାଙ୍କଡ଼ ହାତରେ ଶାଳଗ୍ରାମ ପରି । ପରିଶ୍ରମକୁ ଯେ ଶିକ୍ଷା କରିପାରି ନାହିଁ ତା ପାଇଁ ଶିକ୍ଷା ଅପୂର୍ଣ୍ଣ । ଏ ଗାଁର ଅନେକ ପାଠ ପଢ଼ୁଆ ତାର ପ୍ରକୃଷ୍ଟ ପ୍ରମାଣ । ସାଧୁ ମହାତ୍ମା କ'ଣ ପାଇଁ ଆସନ୍ତି ଏ ଗାଁର ଲୋକେ ସଭ୍ୟ ହୋଇଛନ୍ତି । ଅନେକ ତ କହନ୍ତି, "ବାହାରର ଦୃଶ୍ୟ ବଦଳିଲେ ଖାଲି ଚଳିବ ନାହିଁ । ଅନ୍ତର ବଦଳିବା ଦରକାର ।" ଅନ୍ତର ବଦଳୁଛି କେଉଁଠି ? ସାଧୁ ମହାତ୍ମା ନମସ୍ୟ । ନାଥ ବାବୁଙ୍କର ମୃତ୍ୟୁ ପରେ ତାଙ୍କ ପରିବାରର ସମ୍ମାନ ହ୍ରାସ ପାଇଛି । କିନ୍ତୁ ସାଧୁ ମହାତ୍ମା ଏବେ ବି ସେଇ ସମ୍ମାନର ଅଧିକାରୀ । ମହାରଣୀଙ୍କର ପିଲାଏ ତାଙ୍କୁ ମାନନ୍ତି । କିଏ କେବେ କେବେ କହେ । "ତାଙ୍କର ସମ୍ମାନ ନାହିଁ, ତେଣୁ ଲୋଭ ନାହିଁ । ଭଗବାନ ତାଙ୍କୁ ଅସମ୍ମାନ କରି ଆଦର୍ଶବାନ କରିପକାଇଛନ୍ତି ।

Digitized by PPRACHIN, SOA

ତାଙ୍କ ଈଶ୍ୱର ବେଳେବେଳେ ଅବଶ୍ୟ ଏକଚାଟିଆ । କର୍ମ୍ମ ସେବକି ମୂର୍ଖପଣ । ସେବା କରିବାକୁ ଭଲ ପାଅନ୍ତି, ସେବାର ଅର୍ଥ ବୁଝନ୍ତି ନା ବୁଝନ୍ତି ।" ମହାରଣା ତାଙ୍କ ପିଲାଙ୍କୁ ଠିକ୍ ବୁଝିପାରୁଥିଲେ । ସାଧୁ ମହାନ୍ତଙ୍କୁ ବିଶ୍ଳେଷଣ କରିବାର ଅଧିକାର ସେମାନଙ୍କର ନାହିଁ । ପଢ଼ନ୍ତୁ ପାଠ ଯେତେ ପଢ଼ନ୍ତୁ, ଯେତେ ଜ୍ଞାନ ଅର୍ଜନ କରନ୍ତୁ ।

"ଖବରଦାର୍ ! ସାଧୁ ଦାଦା ସିଏ, ତ୍ରିପୁରେଶ୍ୱର ମହାଦେବ ସିଏ" । ଅକସ୍ମାତ୍ ଏକ ବଜ୍ରକଣ୍ଠି ସ୍ୱର ଆନ୍ଦୋଳନରେ ଧାନ କଅଁସର ଚୂଳରେ ଅନେକ ଭଉଁରୀ ମାଛି ଯୋଗେଇଥିଲା । ମହାରଣା ଅନୁଭବ କରୁଥିଲେ ଯେତେ ବେଳେ ତାଙ୍କ ପ୍ରାଣକୁ ସେଇ ସ୍ମୃତିବାୟୁ ସାନ୍ତ୍ୱନା କରିଯାଉଛି । ସ୍ମୃତିର ସବୁ ଭେଟରେ ଧାଇଁ ଆସୁଥିବା ଖାଲି ଭଞ୍ଜିନ୍ଦାଏ । ମହାରଣା ଚମକି ପଡ଼ିଲେ । ସାମ୍ନାରେ କିଏ ? 'ସାଧୁ ଦାଦା ।'

'ତମେ ଏଠି, କ'ଣ ହେଲା ?'

'କାହିଁ କିଛି ନାହିଁ । ତମେ ତ ଏକା ବୁଲୁଛ ।'

ମହାରଣାଙ୍କ ମନେ ପଡ଼ିଲା । 'ଶୁଣ ଦାଦା, ଦେଖ କ'ଣଟାଏ !

'ଖାଲି ଭଞ୍ଜିନ୍ଦାଏ ?'

'ଖଞ୍ଜଣି ଶୁଭୁନି ନା ?'

'ନା'

Digitized by PPRACHIN, SOA

ମହାରଣା ଫେର ପୁଚ୍ଛିଲେ । କଣ ଭାଇ ? ଅରେ ସେ ଯାଇ ଗମ୍ଭୀର ମଟିରେ ଗାଣ୍ଡ ଉଚ୍ଚାଉଛନ୍ତି ଛ । ‘କେତେ ଗାଣ୍ଡ ପଡ଼ିଲେଣି ଦେଖୁଛ ଦାଦା ।’

‘ହଁ, ତ ଉଡ଼ୁଥିବ ବୋଧେ । ଭାଗିଗା ପିଲଟା । ଟିକେ କେତେ ଚଞ୍ଚଳ ହୋଇଯାଉଛ ।’

ମହାରଣା ଧିର କଣ୍ଠରେ କହୁଥିଲେ, ‘ଏମାନେ ଏମନ୍ତେ କେମିତି ହୋଇଗଲେଣି ।’



Digitized by PPRACHIN, SOA

ଦୁଇ ବନ୍ଧୁ ଫେରୁଥିଲେ । ଜନ୍ମ ଚତୁର୍ଦ୍ଦଶ । ଏମିତ ଚତୁର୍ଦ୍ଦଶ ହୋଇ ବୁଲୁଥିଲେ ଆଉ ଦିନେ, ବଇଜ ପେଷ୍ଟିଦନ ଇହଧାମ ତ୍ୟାଗ କଲେ । ସେଦିନ ସାଧୁ ମହାନ୍ତି ମନ୍ଦିର ଘଣ୍ଟା ତଳେ ବସିଥିଲେ । ନାଥ ବାସଙ୍କର ଶରୀରକୁ ଅନେକ ଲୋକ ଘେରିଥିଲେ । ପ୍ରବୋଧନା ଦେବାକୁ ଯାଇ ମହାରଣାଙ୍କ ପାଟି ଖଣ୍ଡ ମଇଲାଇଥିଲା । ସେଦିନ ମହାରଣା ପ୍ରତିଜ୍ଞା କରିଥିଲେ ନାଥ ବାସଙ୍କର ସ୍ଥାନ ଗ୍ରହଣ କରି ସାଧୁ ଦାଦାଙ୍କୁ ସବୁବେଳେ ଖୁସୀ କରି ରଖିବେ । ମହାରଣା ତେଣୁ ବସିବାକୁ ବାହୁଁଥିଲେ । ସାଧୁ ମହାନ୍ତି ଆଉ ବସିଲେ ।

'କ'ଣ ମହାରଣା' ତମେ ଭାଗବତ ଗାଁରେ ନାହିଁ କି ?

'ନାହିଁ ଦାଦା, ଆସିପାରି ନଥିଲି' ଡାକ୍ତରଙ୍କ ଥିଲି ।'

'ତୁମର ଆଉ କି ଚିନ୍ତା, ଚିନ୍ତା ଧରମୁ ଜେନାର !'

'ଧରମୁ ଜେନାର ।'

'ସେଥିପାଇଁ ଶୁଣୁଥିଲି ଯାଁରେ ନ ଥିଲ କି ?' ମହାରଣା ସ୍ୱଭାବରୁ ନଥିଲେ ଧରମୁ ଜେନାର ଚିନ୍ତା କ'ଣ । ପୁଣି ଜେଲ । ଧନ ଜନ କେଉଁଥିରେ ଅଭାବ ନାହିଁ । ସାନ୍ତ୍ୱ ଘରେ ତ ତାର କ୍ଷାନ୍ତର ଶ୍ରେଣୀ । କେବଳ ରୋଷାଏ ଅଦ୍ଭୁତ ତାର ସ୍ତ୍ରୀ

Digitized by PPRACHIN, SOA

ମନ୍ଦପାଉଛି । ସେ ତ ବହୁତ ପୁରୁଣା କଥା । ବୋଧୂ ପୁଅ ଘର ।
ନାତି ନାତୁଣୀ ଅନେକ । ଧରମୁ ଜେନାର ଅଜ ନ ଅଣା ।
ମାଳମଦନମା ! ମହାରଣା ପଚାରନ୍ତେ—

'କ'ଣ କହୁ ମାଳମଦନମା ?'

ତାହାଙ୍କ ବୟସ ହସି ସାଧୁ ମହାନ୍ତି କହିଲେ, 'ମାଳମଦନମା' ।

'ସେ ପୁଣି କୋଉ କଥାକୁ' ? ବିସ୍ମିତ ହୋଇ ମନ୍ତବ୍ୟରେ ମହାରଣା ।

'ମଦନା ମରିବାର କେତେଦିନ ହେଲା ?'

'ମଦନା ! ମାସେ ହେବ ।'

'ଲତାର କଥା କ'ଣ ହେବ ବୁଝିଚ ।'

'ଲତା ଆଉ କ'ଣ କରିବ । ମଦନାର କଚ୍ଚି ଜନ୍ମ ଅଛି ତାକୁ ନେଇ କରି ସୁଖେ ଦୁଃଖେ ରହିବ ।'

'କିନ୍ତୁ ତାକୁ ତ ବେଶୀ ବୟସ ହୋଇନି, ସେ ତ ପୁଣି ସଂସାର ଗଢ଼ିବାର ସ୍ୱପ୍ନ ଦେଖୁଥିବ ।'

'ତା ତ ସତ କିନ୍ତୁ କିଏ ତାକୁ ବାହାହେବ ?'

'ସେ ତଣ୍ଡ ଭାବାକୁ ଅପଛଯାଏ ।'

'ସେମିତି କିଏ ଅଛି । ମଦନାର ତ ଭାଇ ନାହିଁ । ଜାତା ନ କଲ୍ଲ ବାପ ପୁଅ ଭାଇମାନେ ମଧ୍ୟ ସମସ୍ତେ ବହୁତ ବଡ଼ ସଂସାରୀ । ଅନ୍ୟ ସାହସ୍କେବ କିଏ ? ଧରମୁଙ୍କା ତ' ବୁଢ଼ା ।'

Digitized by PPRACHIN, SOA

ସାଧୁ ମହାନ୍ତ ହସି ହସି କହିଲେ—'ହଇହେ ମହାରଣାଏ ଭମର ପକ୍ଷୀ ଅଛନ୍ତି । ମୋର ବି ଅଛି । ସେଥିପାଇଁ ଆମେ ଧର୍ମକୁ ବୁଢ଼ା କହୁଛେ । ଯଦ ଆମର ନ ଥା'ନ୍ତା ?

ମହାରଣା ବୁଢ଼େ ହସିଲେ, 'ଦାଦା ଧରମ୍ କଥା କାହିଁକି ପକାଉ । କ'ଣ ପିଏ ଲଢାକୁ···।'

ସାଧୁ ମହାନ୍ତ କଥା ବୁଲେଇ ନେଇ କହିଲେ—'ରଶିକ ବୋଲି କହୁଛି ।' କାନରେ ହାତଦେଇ ବୁଢ଼ା ମହାରଣାଏ ଶୁଣିଏ ରହିଲେ । 'ଲଢା ତା ସାନ ପୁଅଠୁ ବି ସାନ ।'

'କାଲି ତା ପୁଅମାନେ ଲଢାକୁ ମା ଡାକିବାକୁ ଆରମ୍ଭ ହୋଇଗଲେଣି ।'

'କ'ଣ କହୁଚ ଦାଦା ?'

'ମହାରଣା, ଲକ୍ଷ୍ମୀ, କାମିନୀ କାଞ୍ଚନରେ ଆଶା । ଧରମ୍ କହୁଚି ଲଢାକୁ ସେ ପୋଷିବ । ତାର ଭଲ ମନ୍ଦ ବୁଝିବ । ଲଢା ତାକୁ ଆଦରିବ । ଅଜି ପିଲାଙ୍କର ଲେଖା ଘରେ ହିତରେ ।'

'ଆଜି ଲଢା କ'ଣ କହୁଚି ସେଇଥି ?'

'ନା, ତା ହୋଇଥିଲେ ଜଞ୍ଜାଳ କାହିଁକି ହୋଇଥାନ୍ତା । ତାଙ୍କ ଲତ ଅଧରେ ଲଢକ ଚେଷ୍ଟା ଅଛିଥିବ । ଠିକ୍ ଧରମ୍ ଯେମା ଓ ତା ଡଲ ଫେରିବା ପରେ ପରେ' । 'ଲଢକ ଚେଷ୍ଟା ଆଜି ଲଢା' ! ମହାରଣା ଗୁଡ଼ୁଲୁ ଦେଇ ଉଠି କହିଲେ— 'ଦାଦା ସେ ହି କଥା ଶରଣ୍ଣିଲକୁ ଆଦରି ଦେଲେ ଖୁବ୍ ଭଲ ହୁଅନ୍ତା । ଲଢା ତପସ୍ୱୀ କୁଳୀନ ବ୍ରାହ୍ମଣ ଘର ଝିଅ ମୁଲକ ପଥରେ ପଡ଼ ତପାରାର ହାତ ଧରିଲା । ସେ ତ ମଲା·· ଲଢା ତପସ୍ୱୀ । ଲଢକ ତ ଅଜଯାଏ ବାହା ହୋଇନି ।'

Digitized by PPRACHIN, SOA

"ଆମ ସମସ୍ତଙ୍କର ସେଇ ଗୋଟା ଉତ୍ସବ ଆଜି ଲୋପ । କେନ୍ତୁ
ଝରମୂର ପାଖରେ ଉଠିବ ରନ୍ଧା ପାଇବ ତ ?"

ବୁଢ଼ା ମହାରଣାଙ୍କର ମନେ ମନ୍ତ୍ରୀଙ୍କ ଠିକ୍ ଚ ୫ବର୍ଷ ତଳେ ।
ଭୁପିନେଶ୍ବରଙ୍କର ଆସ୍ଥାନରେ ନୂଆ ଲାଗିଛି । ଗରଣଗରେ ଥରେ
ଯନ୍ତ୍ରାଙ୍କ ତୁଏ ସେଠି । ମାଟିଆ ମଣ୍ଡପ ପିଲା ବୁଢ଼ା ସମସ୍ତେ ଏଥିରେ
ଯୋଗ ଦେଇଛନ୍ତି । ମଦନ ନୋଟା ଚଳନ୍ତ୍ ଶେଷ ପ୍ରଥା ଚଳ ଆସିଛି ।
ସେତେବେଳକୁ ଯନ୍ତ୍ରାଳ ସରିଯାଇଥାଏ । ସେଇ ବସିଛନ୍ତି
ଠାକୁରଙ୍କ ଅଗଣାରେ । ପିଲା ବୁଢ଼ା ଧାଡ଼ିପିରେ ଆସ୍ଥାନଟି ପୂର୍ଣ୍ଣ
ହୋଇଛି । ନାଚ ହେବ । ମଦନା 'ନାଟ' ଲେଖିଛି । ମଦନା ଗୋଟେ
ଭଟ୍ଟ । ପ୍ରଥମେ ତାର ଗୀତ ଗାଇ ପଡ଼ିବ ନାଚରେ । ବଜାଇ ଡଟରୁ
ମଡ଼କ ଝୁଲୁଛି । ସେଠିଁମାନଙ୍କ ବଜାର ଆଲୁଅରେ ଝଲସୁଛି
ଭଣ୍ଡପର ଫୁଲ । ମଦନ ପାଖରେ ସାଧୁ ମହାନ୍ତ ଓ ମହାରଣାଏ
ବସିଛନ୍ତି ଜଗାବଳଙ୍କ ଠାକୁରଙ୍କ ପଛ । ଗୁରୁ ମଦନା ଭାଙ୍ଗି ?
ସମସ୍ତେ ବୁଡ଼େ ଖୋଜିଲେଣି । ତାଙ୍କୁ ଖବର ଗଲାଣି । ସାଧୁ ମହାନ୍ତ
ଇଙ୍ଗିତ ଦେଲେଣି "ଆରମ୍ଭ କର" । କିଏ କହିଲା "ଗୁରୁ ଫେରି
ନାହାନ୍ତି ।"

ସାଧୁ ମହାନ୍ତ ଘାଟିଲେ—"ଆରେ ଗୁରୁ ନ ଥିଲେ
ଆଉ ଜଣେ ବୃଦ୍ଧଙ୍କୁ ଡ଼ାକ । ଗୁରୁ ପରେ ଗୁରୁ ନ ବାହାରିଲେ ଆଉ
କ'ଣ ନାଚ ଶିଖୁଛ ?"

ଓଦନ ଝପି ଠିଆହେଲା ଚାଉଁଆ ବଳଦ ପାଖରେ । ଗୋଟିଏ
ସ୍ବରରେ ଝର୍ଭର ଭଳେ ଭାମ ତନ୍ଦ୍ରା ନାହିଁ । ମଦନା ଗୁଲ ନ
ରହିଲେ ନାହିଁ, ଆମେ କ'ଣ ତା ସ୍ଥାନ ପୂରଣ କରିପାରିବା ନାହିଁ ?"

Digitized by PPRACHIN, SOA

ସାଧୁ ମହାନ୍ତ କହିଲେ—"ହଁ ଠିକ୍ କହିଚୁ । ଆଜ ତୋ ଘୁଙ୍ଗୁରିରେ ନାଚ ଆରମ୍ଭ ହେଉ । ଗଉଳ ଆଜଠୁ ଦ୍ୱାପର ଯୁଗ ।"

ଗଉଳ ସେହି ମୁହୂର୍ତ୍ତରୁ ହେଲ ଦ୍ୱାପର ଯୁଗ । ପ୍ରଥମ ନାଚ ଭାର । ଗେଣ୍ଡା ଦେଇକି ବୁଢ଼ା ବେଶ ହୋଇ ନାଚୁଛି । ଥାବୁକ ଥାବୁକ୍ ମୋଟା ଦେହ ଉଠୁଛି ପଡ଼ୁଛି । ଦଶ ବେହେରା ଦୁଇଟି ଗ୍ଲେଟ ହାତ ହଲାଇ ହଲାଇ ନାଚନ୍ତି । କେତେବେଳେ ଡାହାଣ କାନ୍ଧ ଉପରକୁ ଉଠୁଛି କେତେବେଳେ ବାଁ କାନ୍ଧ ଉଠୁଛି । ଢଳ ଢଳ ନାଚୁଛି ବୁଢ଼ା ଜଗନ୍ନାଥଙ୍କର ପହଣ୍ଡି ପରି । ପୁଣି ହୁଡ଼ାଟ ଶୁଭୁଚି, "ଜଗାରେ" !

ମଜା ମୋର କଟିଲାଣି, ଆଉ କାହିଁ ପାଇଁ ଲଗାରେ ।

ଜଗାରେ, ଜଗାରେ, ଜଗାରେ ।

ମୃଦଙ୍ଗ ବାଜେ ମିନଦ୍ରୁମ୍ ଗିନ ବଜାଇ ସହକାର୍ଯ୍ୟ ଦଳ ଦଳ ହଲ ନାଚନ୍ତି । ସେମାନେ ଚଞ୍ଚଳ ଟୋକା । ବୋହୂ ଝିଅ ସୁନ୍ଦରୀମାନେ ସୁଲକ୍ଷଣା ମାଇପିଙ୍କର ଆଡୁଆଳରେ ନାଚ ଚାହିଁ ଅନେଇଛନ୍ତି । ପିଲାଏ ତାଳି ଧରିଲେଣି । ମହାରଣାଏ ସାଧୁ ମହାନ୍ତଙ୍କ କାନରେ କହିଲେ, "ଗଉଳ ତ ଭଲ ନାଚୁଛି ।"

ଚଉକୁ ଷଡ ଗୀତ ଗାଇ ବୁଢ଼ା ନାଚୁଛି—

ଗାଁଟା ପାଞ୍ଚର ମଲ୍ଲଦ୍ରୁମଣି
ଗାଁ ଠାକୁର ମୋ ପିନାକ ପାଣି
ଆଜ ଢଡୁଅଛୁ ଭାଙ୍ଗିଲ ଭୁଗ
ଭବ ଉଠାଉଛୁ କେତେ ଉଡ଼ାଣି

ଜଗାରେ......

Digitized by PPRACHIN, SOA

ଆଜିର ଏ ଉନ୍ନତ ସଂସ୍ଥା ସାଧୁ ମହାନ୍ତଙ୍କ ଦାନ । ମହାରାଣୀ ଏ କୃତଜ୍ଞ ହେଲେ । ଦେଖିଲେ ସାଧୁ ଦାଦା ଘ ଜଣ କଷ୍ଟ ସହୁଛନ୍ତି । ସାଧୁ ମହାନ୍ତଙ୍କ ଦୃଷ୍ଟି ଲମ୍ବି ଯାଇଥିଲା ବହୁ ଦୂରକୁ ଯେଉଁଠି ଉଡୁଛି କପିଳେଶ୍ୱର ମନ୍ଦିରର ପତାକା । ମହାରାଣୀ ଏ ପ୍ରଶ୍ନ କଲେ, "ଦାଦା, ଲତା କଥା କ'ଣ ଚିନ୍ତା କରୁଛ ।"

"ଚିନ୍ତା କରୁନ, ଯେବେ ଲତାକୁ କହିଛି ଉତ୍କଳ ସଙ୍ଗେ ଯାଇ ରହିବାକୁ ।"

"ହେଲେ ସ୍ୱାର ଚଳିଣତ ?"

"ଲତା ତା ହେତୁରେ ଯିବ, ଧରମ୍ ତ ଲତାକୁ ଆଶ୍ରି ନ ଥିବ । ଯେଣୁ ତାର ତା ଉପରେ କଣ୍ଟ ଦାବୀ ନାହିଁ । ତା କଷ୍ଟ ଅବସ୍ଥାରେ ତାକୁ ସେ ରଖି ପାରିବ ନାହିଁ । ଯଦି ବା ଲତାକୁ ସେ ରଖେ ତାହା ଗୋଟାଏ ସନ୍ଧିରେ—ତ ହା ହେଉଛି ଲତା ନାମରେ ଧରମ୍ ତାର ସ୍ଥାବର ଅସ୍ଥାବର ସମ୍ପତ୍ତିର ଅର୍ଦ୍ଧେକ ଲେଖିଦେବ ।"

ମହାରାଣୀ କହିଲେ "ଠିକ୍ କଥା"



Digitized by PPRACHIN, SOA

ବ୍ରାହ୍ମଣ ଘର ଝିଅ । କର୍ମ ଦୋଷରେ ଜଘନ୍ୟ କାମ କରିଥିଲା । ସେ ବ୍ରାହ୍ମଣ ଘରର ରକ୍ତବିନ୍ଦୁ ତ ତାହା ଦେହରେ ରହିବ ।" ଲତା ସ୍ୱଭାବତଃ ସେ ଜଣେ ଅଶିକ୍ଷିତା ନାରୀ । ବାଳ୍ୟ କାଳରୁ ସେ ମଦନାର ରକ୍ଷିତା ଥିଲା । ଏବେ ଭୁବନର ରକ୍ଷିତା ହୋଇଛି । ସାଧୁ ମହାତ୍ମ ଏ ପ୍ରକାର ପଦ କେବେ ପ୍ରୟୋଗ କରନ୍ତି ନାହିଁ । ଲତା କହେ । ସାଧୁ ମହାତ୍ମ ଏତେ ବଡ଼ ଲୋକ । ସେ ତ ବୁଝିଥିବେ ଆମକୁ ବାଧ୍ୟକରି ସ୍ୱାମୀ ସ୍ତ୍ରୀ ରୂପେ ରହି ଲୋକେ ମାନଥାନ୍ତେ ।' ସାଧୁ ମହାତ୍ମ ଏସବୁ କଥାକୁ ସହଜରେ ହସିକରି ଉଡ଼ାଇ ଦିଅନ୍ତି । "ସେମାନେ ସ୍ୱାମୀ ସ୍ତ୍ରୀ, ଅଥବା ନ ହେଲେ ମଧ୍ୟ ଭବିଷ୍ୟତରେ ସମସ୍ତେ ସେଇଆ ହିଁ ବୁଝିବେ । ଲୋକେ କ'ଣ ସେତେବେଳେ ଏତେ ଅବୁଝା ଥିବେ ।"

ଲତାର ମାନସରେ ମଦନାର କଥା । ଶ୍ମଶାନପ୍ରାନ୍ତ ବ୍ରାହ୍ମଣ ସାହିରୁ ଉଲଙ୍ଗ ଅବସ୍ଥାରେ ସେ ହିଁ ତାକୁ ଟାଣି ଆଣିଥିଲା । ସେ ପୁରୁଷ ଭୁବନ ନୁହେଁ । ଭୁବନ ତ ସାଧୁ ମହାତ୍ମଙ୍କର ଦାନ । ତାଙ୍କର ଜମିରେ ସେ ଘର କରିଛି ତାଙ୍କ ଦାନ ଟଙ୍କା ପଇସାରେ । ଆଶ୍ରିତଟିଏ ସେବା କ'ଣ ସାହାସ ଦେଖାଇବ । ପର ମୁହୂର୍ତ୍ତରେ ଲତା ନିଜକୁ ଏଠ ମନେକଲା । ଭୁବନ ତାକୁ ଉଦ୍ଧାର କରିଛି । ଧରମାର ମୃତ୍ୟୁ ପରେ ସେ ଧାଇଁ ଆସିଛି ସାହାଯ୍ୟ ନେବାକୁ । ନଚେତ୍ ଧରମା କବଳରୁ କିଏ ତାକୁ ରକ୍ଷା କରିପାରିଥାନ୍ତା । ଭୁବନ ସାଧୁ ମହାତ୍ମଙ୍କର ନିର୍ଦ୍ଦେଶରେ ତାକୁ ଆଣି ରଖିଛି । ସାଧାରଣ ମଣିଷଟିଏ ସେ । ଜଣେ ଅସାଧାରଣ ମଣିଷର ଇଙ୍ଗିତରେ ଚାଲିଛି । ଏଥିରେ ତାର ଦୋଷ କେଉଁଠି ? ସେ ଯେ ତାକୁ ନିଜ ପଦରେ ରଖିପାରିଛି ଏ ତ କମ୍ ଦାନ ନୁହେଁ । ସାଧୁ ମହାତ୍ମ ତାର ଶକ୍ତିର ଉତ୍ସ । ତେଣୁ ସେ

Digitized by PPRACHIN, SOA

ତାଙ୍କର ବଶମ୍ବଦ । ମୁଁ ଅନୁଗତ ଅଛି । ଉଦ୍ଧବ ଲାଗି, ସାଧୁ ମହାନ୍ତ ଲାଗି । ତେଣୁ ଉଭୟେ ମୋର ନମସ୍ୟ । ଉଦ୍ଧବ କହିଲେ—'ଏ ଝାଟି ମାଟିର ଘର ତୋତେ ଭଲ ଲାଗୁ ନଥିବ ଲତା ।'

ଲତା ଉତ୍ତର ଦେଲା—'ଝିଅ ଯେତେବେଳେ ଅଭ୍ୟାସ ତ ସେଇଁ ଦିନରୁ ଗଲଣି ।'

ଉଦ୍ଧବ କହିଲା—'ପାଦ ପାଣି ଛୁଇଁଥିଲୁ ତା ପ୍ରସାଦ ତୋତେ ଅମୃତ ପରି ଲାଗୁଥିଲା ।'

ଲତା ବୁଝିଲା, ଉଦ୍ଧବ କ'ଣ ତାକୁ ଇଙ୍ଗିତ କରୁଛି । ଉଦ୍ଧବ ପୁଣି କହିଲା— ମଦନା ଖୁବ ଭଲ । ଲତା, ନାଚୁଆ ପୁଣି ନାଚ ମାଝିର ମାଷ୍ଟର । ମଣିଷ ହିସାବରେ କେତେ ଦରଦୀ ସେ ମୁଁ ଜାଣେ । ସାଧୁ ମହାନ୍ତଙ୍କୁ ମୁଁ ସବୁଠାରୁ ଉଚ୍ଚ ସ୍ଥାନ ଦିଏ । ତା'ପରେ ଆସେ ମଦନା ଭଲ । ତାର ସ୍ତ୍ରୀ ଭୁ । ଯନ୍ତ୍ରଣା ଭୋଗିଛୁ । ସହିପାରିବୁ କପରି ? ସାଧୁ ମହାନ୍ତଙ୍କ ମନକଥା ଖାଲି କହିଲି । ସେ ମୋତେ ବୁଝିଲେ, 'ଭଲରେ—ତାକୁ ଆଦର କର । ଭଗବାନ ତୋ ପ୍ରତି ସନ୍ତୁଷ୍ଟ ହେବେ ।'

ଲତା ନୀରବରେ ଶୁଣୁଥିଲା । ସଂତ ଉଦ୍ଧବର ତା ପ୍ରତି ଏତେ ସ୍ନେହ ! ସାଧୁ ମହାନ୍ତ ପଛରେ ଏ କଥାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଥିଲେ ! ସେ ପଚାରିଲା—'ତାହାହେଲେ ସେ ତମକୁ କହିଥିଲେ ମତେ ରଖିବାକୁ ।'

ଉଦ୍ଧବ ଉତ୍ତର ଦେଲା ଉଦାସ ହୋଇ, 'ସାଧୁ ମହାନ୍ତ ଏବେ ତ ଯଦି କହିବେ ଆମର ବିବାହ କରିଦେବା ପାଇଁ ମୋର ଇଚ୍ଛା ମନା

Digitized by PPRACHIN, SOA

ଭଲପାଉ ନାହିଁ । ବିବାହ ନ କଲ ତ ମୋର ସ୍ତ୍ରୀ ହେବୁ । ବିବାହ
କରି ଲୋକରେ ମର୍ଯ୍ୟାଦା ପାଇବୁ । ଏଥିରେ ମୁଁ ଭାଙ୍ଗିଲି ଆପତ୍ତି
କରିବ । ଆମର ଅବସ୍ଥା ଯାହା ସେଥିରେ ଲୋକଙ୍କ ଉପସ୍ଥରେ କିଛି
କହିପାରିବା ନାହିଁ । ବିବାହର ଦୁଃଖ ତ କେହି ଜାଣିଛ ନାହାନ୍ତି ।
ସମସ୍ତେ ସେହି ଗୋଟିଏ କଥା କହୁଛନ୍ତି —ଲତାକୁ କିଏ ରଖିବ ?
ମଦନା କ'ଣ କହୁଥିଲା ? ସେ ତ ତାଙ୍କ ସାମାଜିକ ଗୁଣରେ ବାହା
ହୋଇପାରିଥାନ୍ତା । ଗୋଟାଏ ଝିଅକୁ ଦେ । ସେହି ଝିଅଙ୍କରେ ସବୁ
ଜ୍ଞାନରକ । ମୁଁ ତାର ପେଟ ପୋଷିଦେଇନାହିଁ । ଜନ୍ମ ନଇଁଆ ତଳ
ସେଇଟା । ଯିଏ ଚୁଲାରେ ଯିବକି । ଏବେ ସମସ୍ତେ କହୁଛନ୍ତି ତୁ
ତା'ର ରକ୍ଷିତା ଥିଲୁ, ସ୍ତ୍ରୀ ନୋହୁ ।'

ଲତା ମନରେ ଚିନ୍ତା କଲା, 'ଜୟବା ଠିକ୍ କହୁଛି । ମଦନା
ସେଇଠିକ ଭୁଲ କରିଗଲା । କିନ୍ତୁ ମଦନାକୁ କ'ଣ ଏଥିପାଇଁ ଦୋଷୀ
ସାବ୍ୟସ୍ତ କରିପାରିବ ? ସେ ଗୋଟେ ଭୁଲ କରିଦେଲା । ତାପରେ ଜୟବା
ତାକୁ ବଞ୍ଚାଇବାକୁ ଆଜି କଷ୍ଟ ହେଉଛି । ବିଧବାର ପିଲା ଅଭ ଘରେ
ବିବାହ ହୋଇପାରେ । ରକ୍ଷିତାର ଗୋଟେ ବିବାହ କ'ଣ ? ଜୟବା
ସେ ତାକୁ ପୂର୍ଣ୍ଣପ୍ରାଣରେ ସ୍ନେହ ଏବଂ ଶ୍ରଦ୍ଧା ହୋଇଗଲା ।' 'ମନେ
ତାର ପଡ଼ୁଥିଲା ଝିଅଟିରେ କେତେଥର ଜୟବା ଯାଉଛି ଆସେ ।
ମଦନା ଭଲ, ମଦନା ଭଲ ଲୋକ । ମନେ ହେଉଛି ଅଣ୍ଟି ତଳକୁ
କରେ । କେତେ ସମ୍ଭ୍ରମରେ କଥା କହେ । ଧଇମା ପରି କୁହେଇଁ
କରନ୍ତି । ଲତା କ'ଣ କହିବା ପୂର୍ବରୁ ଜୟବ କହିଲା—"ଲତା,
ସାଧୁ ମହାନ୍ତିଙ୍କୁ କେବେ ଖରାପ ଭାବିବୁ ନାହିଁ । ତୁ ଜାଣୁ ମୁଁ ତାଙ୍କୁ
ବାପ ପରି ସମ୍ମାନ ଦିଏ । ଆଜିଗ ତାଙ୍କ କଥା ସମସ୍ତେ ମାନୁଥିବେ ।
ଏବେ ବି ଅବେଧୀ ଲୋକେ ବାହାରିଛନ୍ତି । ମଦନା ଭଲ ସେ

Digitized by PPRACHIN, SOA

କହୁଥ ଭଲ ପାଉଥିଲେ । କଣ୍ଠ ବଡ ବୋଲି ଖୁ କୁହୁଥିଲେ ।
କେତେଥର କହନ୍ତି ମଦନା ଏ ଗାଁର ଗର୍ବ ।'

ଲତାର ଆଖିରେ ଲୁହ ଛଳଛଳ । ମଦନା ଏ ଗାଁର ଗର୍ବ ଥିଲା । ଏକଥା ସାଧୁ ମହାନ୍ତି ବି କହୁଥିଲେ ! ଉତ୍ସବ କଥାରୁ ମିଛ ଲୁଚିବାର କିଛି ନାହିଁ । ମଦନା ପରେ ଲତା ହୃଦୟରେ ତାର ଜାଗା ସୁନ୍ଦର । ନ ଦେଇ ପଡ଼ିଲେ କେଉଁ ଲାଭ । ସେ ହୃଦୟ ଦେଇପାରେ । ହୃଦୟର ଆହ୍ୱାନରେ ଏଥର ସେ ନଡ଼ିଲା ଆସିପୂରଣ ରକ୍ଷଣଶୀଳ ବ୍ରାହ୍ମଣ ସମାଜର ଶୃଙ୍ଖଳା ଭାଙ୍ଗି ଧାଇଁ ଆସିଥିବା ମାଟିଆପଢ଼ା । ସାଧୁ ମହାନ୍ତି ତାର କେଉଁ ଲାଭ ପଚାରନ୍ତେ ନାହାନ୍ତି । ସେ କିଛି ଭୁଲ ବୁଝି ନାହାନ୍ତି ।



Digitized by PPRACHIN, SOA

(୭)

ଶରତର ନିର୍ମଳ ଆକାଶରେ ମେଘ ଉଠିଥିଲା । ମାଟିଅଁ-ଚଙ୍ଗରେ କିଛି ବର୍ଷା ହୋଇଯାଉଛି । କିନ୍ତୁ ସନ୍ଧ୍ୟାର ଶଙ୍ଖ ମଧ୍ୟ ଲୋକେ ଶୁଣିଛନ୍ତି । ଲାଗୁ ଥିଲା ଠିକ୍ ଶରତ୍ ପ୍ରକାରରେ ଗୋଟାଏ ନୂଆ ଦେଖା ଷଡ଼ଋତୁ ହେବ । କିନ୍ତୁ ପ୍ରକୃତିର ପ୍ରୟାସ ବ୍ୟର୍ଥ ହୋଇଚାଲି ଚାଲି ମରନ୍ତେ ହୁଛି । ପରଦିନ ସକାଳେ ଆକାଶ ଆଉଥରେ ନିର୍ମଳ ହୋଇଗଲା । ଏଇ ଭଳିଆ ନୈମିତ୍ତ ବର୍ଷା ଶରତଋତୁର ସ୍ୱଭାବ । ମହାରଣା ଖୁସି ହେଉଥିଲେ । ଧରମା ଚୁପ୍ ହୋଇଯାଇଛି । ତାକୁ ନେଇ ସବୁ ଏତେ ସମସ୍ୟା ଉଠିବା କଥା ସେ ବୁଝି ନ ଥିଲା । ଜମିରୁ ସେ ଅଧ ଚାଉଳ—ଦେଖା ଶୁଣିବା ମାତ୍ରେ ପିଲାଏ ଚିଡ଼ି ଉଠିଲେ, "ବୁଢ଼ା ବୟସରେ ଫେସନ ଜାଗିଛି ।" ସଭାସମିତି ପର୍ଯ୍ୟନ୍ତ କଥା ଯାଇଚ ରହି ନାହିଁ । ମୋଟାମାଟି ଲୋକ ଚୁପ୍ ରହିଲା ଧରମୁ । କଥା ହାତରୁ ଖସିଗଲା । ଉତ୍ତରର ଅଛି ବା କ'ଣ ? ସବୁ ନାଟ ସାଧୁ ମହାନ୍ତ ବୁଢ଼ାଙ୍କ । ନଇଁଲେ ଏବା ଟେର ମାଇପି ଲୋକଙ୍କର ସାହସ ହୁଅନ୍ତା ଧରମା କଥାକୁ ଏତେ ଦେଖାକୁ । ମହାରଣା ଖୁସୀ ହେଉଥିଲେ । ସାଧୁ ମହାନ୍ତ କହୁଥିଲେ, "ଯାହାହେଉ ପଞ୍ଚୁଣି ହେଲାଚାଲ, ଧରମୁ ବୋଧା ଦେଲା ।"

"ବୋଧ ନୁହେଁ ଦାଦା, ପଞ୍ଚିମଙ୍କରେ ପଡ଼ି ସେ ଚୁପ୍ ରହିଲା ।" ମହାରଣା ଉତ୍ତର ଦେଲେ ।

"ଆଚ୍ଛା ମହାରଣାଏ ମାମୁଁଧରକୁ ଅଟରେ ଡାକୁଥା ।"

Digitized by PPRACHIN, SOA

'ମାସ୍ୱାଧରକୁ ? ବୃଥା ଚେଷ୍ଟା କରିବା ଦ୍ୱାରା କିଛି ଫଳ ହେବ ନାହିଁ ।'

'ଭାଙ୍ଗିକ ଏପରି ଅଦ୍ଭୁତ କୁହେ ?'

'ମାସ୍ୱାଧର ଯୋଟାଏ ଦଳ ଗଢ଼ୁଛି, ଜାଣିଛେଟି ?'

'କି ଦଳ ?'

ଯେଉଁମାନେ ଜମ କାମରେ ଅସନ୍ତୁଷ୍ଟ ସେମାନଙ୍କୁ ନେଇ ଏଥା ଧରମ୍ । ସେମାନେ ନୂଆ ଈଶ୍ୱର ଗଢ଼ିବେ ।

ସାଧୁ ମହାନ୍ତ କହିଲେ—'ସେମାନେ ଦଳ ଗଢ଼ନ୍ତୁ । ଏ ଗାଁର ମାନବ ଏଣିକି ସେମାନେ ବୁଝିବେ । ଭଲ ଆମେ ବି ମୁକ୍ତି ପାଇବା ।

'ଜମେ ଏ କଥା କହୁଚ ଦାଦା ।'

'ଆରେ ବାବା ଦଳ ଗଢ଼ିବା ନ୍ୟାୟ ଈଶ୍ୱର ଗଢ଼ିବା ଦୁଇଟି ଅଲଗା କଥା । ଏକଥା ସେମାନେ ଶୀଘ୍ର ବୁଝିବେ । ମାଟିଆପଡ଼ାରେ କେହି ନୂଆ ଈଶ୍ୱରଙ୍କୁ ବରଦାସ୍ତ କରିବେ ନାହିଁ ମୋର ବିଶ୍ୱାସ ।'

ମହାରଣା ଲେଖ କଥା ପଦକୁ ସମର୍ଥନ କରି ଚାଲୁ ନାହେଲେ । ଯଥା ସମୟରେ ଏହା ଭୁଲ ବୋଲି ପ୍ରମାଣିତ ହୋଇଛି । ନିସ ଜାରିବ ରହିବେ । ମାସ୍ୱାଧର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ତା'ର ଏକମାତ୍ର ଉତ୍ତର, 'ଗଣା ସ୍ତରରେ ସ୍ୱାତନ୍ତ୍ର୍ୟ ମେଣ୍ଟ ଦେବ ନାହିଁ । ସାଧୁ ମହାନ୍ତଙ୍କ ପରାମର୍ଶଜନକ କରୁଣା ଖେଳୁକ ହସ ଦୁଇ ମାଣ ମାତ୍ର ଓଠ ଉପରେ ରହିଲା । ମାସ୍ୱାଧର ଓ ମାସ୍ୱାଧରର ଅଙ୍ଗ ଶିକ୍ଷିତ ପିଲାଏ ହାତ ଧରିଲେ ଚାଲିଲେ । ମହିମା ପୂର୍ଣ ଆନନ୍ଦରେ ଗଦ୍‌ଗଦ ହୋଇ କହିଲେ, 'ବାଃ ଅମର ଖେଳ ।' ସାଧୁ ମହାନ୍ତଙ୍କର

Digitized by PPRACHIN, SOA

ଆସ୍ଥାପନା ଓ ଭଗବାନଙ୍କ ଉପରେ ବିଶ୍ୱାସ ରଖି କରୁଣା ତାର ଜୀର୍ଣ୍ଣ ଜୀବନତନ୍ତ୍ରୀ ମେଲିଦେଲା । ପଡ଼ୋଶୀ ଘରର ଗିଶ ଟୁଙ୍କୁ ସେଇଦିନୁ କରୁଣାର ପିଲାଏ କେବେ ନାକେଇବାର କେହି ଦେଖି ନାହିଁ ।

ସାଧୁ ମହାନ୍ତ ମାୟାଧରକୁ କହିଲେ, 'ନାଥ ବାପଙ୍କର ପୁଅ ହୋଇ ଏତେବଡ଼ ଅନ୍ୟାୟ ତମେ କରିବ ବୋଲି ମୁଁ ଭାବି ନଥିଲି । କିନ୍ତୁ ଧର୍ମ ତମେ ବୁଝିବ ।'

ମାୟାଧର କହିଲା, 'ନ୍ୟାୟ ଅନ୍ୟାୟ ବୁଝିବାକୁ କୋର୍ଟ କଚେରୀ ଅଛି । ଗାଉଁଲି ବିଚାରକୁ ଠିକ୍ ବୋଲି ମାନିନେବା ବୋକାମି ।'

ସାଧୁ ମହାନ୍ତ ଜାଣିଥିଲେ ମାୟାଧର ତାଙ୍କ ଏ କଥାକୁ ଏପରି ଭାବେ ଏଡ଼ାଇଦେବ । ତଥାପି ସେ ଆଶା କରିଥିଲେ । କରୁଣାର ନିଷ୍ପାପ ଚଳ ଚଳ ଆଖି ଦିଟା ସେ ସହ୍ୟ କରି ପାରନ୍ତି ନାହିଁ । କରୁଣା ନାଥ ବାପଙ୍କ ରୂପ ଧରି ଜନ୍ମିଥିଲା, ନାଥ ବାପ ହୃଦୟର ସରଳତା ସବୁ ଥିଲା କରୁଣା ପାଖରେ । ଦମ୍ଭ କଡ଼ା ସବୁ ପାଇଥିଲା ମାୟାଧର । ଦୁହିଁଙ୍କ ପାଖରେ ଉଭୟଟା ଥିଲେ ଦୁହେଁ ହୋଇଥାନ୍ତେ ସୁପୁରୁଷ । ତାଙ୍କୁ ଜାଣିଥିଲା କରୁଣାର ଦାରିଦ୍ର୍ୟ ତାଙ୍କ ନିଜର ଦାରିଦ୍ର୍ୟ । ସଜନଙ୍କ ମୃତ୍ୟୁର . ଅନେକ ଦିନ ପରେ ଆଜ ସେ ପ୍ରତିଜ୍ଞାବଦ୍ଧ ହେଉଥିଲେ କରୁଣାର ଦୁଃଖ ଲାଘବ କରିବା ପାଇଁ । ତା ପରିବାରର ଭାର ମଠରେ ସେ ଅଂଶୀଦାର ହେବେ । ମନେ ଭାବନ୍ତି କରୁଣାର ପରିବାରକୁ ସେ ପଦ ସମ୍ପୂର୍ଣ୍ଣ ନିଜର କରି ବସନ୍ତେ ତେବେ ତାଙ୍କ ସମ୍ପତ୍ତିରେ କରୁଣା ଅଂଶୀଦାର ହୁଅନ୍ତା । ବନ୍ଧୁ ପ୍ରତି ଶ୍ରେଷ୍ଠ କର୍ତ୍ତବ୍ୟ ସଂପାଦନ କରନ୍ତେ ସେ । କିନ୍ତୁ କୁଟୁମ୍ବ ଲୋକେ ! ସମସ୍ତେ ଟାକି ରହିଛନ୍ତି ସାଧୁ ମହାନ୍ତଙ୍କର ଉତ୍ତର ପୁରୁଷ ହେବାକୁ । କରୁଣାର ସ୍ୱଭାବ ଯାହା ସେ କ'ଣ ସେମାନଙ୍କୁ

Digitized by PPRACHIN, SOA

ତୁଷାର କହିଲା—'ଏମ ପାଠରେ ଅଛି ବଡ଼ମାନଙ୍କୁ ମାନିବା ।'

ସୁହାସିନୀ କହିଲା—'ଠିଁ ଭଲ ପାଠ ମନ ରଖନ୍ତୁ କ ।'

ତୁଷାର କହିଲା—'କୋଉ ପାଠ ପଢୁଛ ।'

ସୁହାସିନୀ କହିଲା—'ବଡ଼ ଲୋକମାନେ କ'ଣ କରନ୍ତି ।'

ତୁଷାର କହିଲା—'ବଡ଼ ଲୋକମାନେ ଯାହା କରନ୍ତି ସାନ ଲୋକମାନେ ତାହା ମାନନ୍ତି ।'

ସୁହାସିନୀ କହିଲା—'ତୁ ମୋ କଥା ମାନୁଛୁ ।'

'ତମେ ବଡ଼ ଲୋକଙ୍କ କଥା ମାନୁଛ କି ?'

'ବାପା ବୋଉ ନେଜେଙ୍କ କଥା ମାନୁଛି, ସାର୍ଙ୍କ କଥା ମାନୁଛି ଆଉ କାହା କଥା କହୁନୁ ।'

'ମହାତ୍ମା ଗାନ୍ଧୀ ତ ସବୁଠୁ ବଡ଼ ଲୋକ । ତାଙ୍କ କଥା ମାନୁନ ।'

'ମୁଁ କ'ଣ ମାନୁନି, ସୁ ପିଲା ସବାବେଳେ ମନେ ମାନୁଛୁ । କଥା ମାନୁନୁ ।'

'ତଉ ତାହାହେଲେ ମହାତ୍ମାଗାନ୍ଧୀଙ୍କ ଗୋଟିଏ କଥା ମାନିବ ।'

'କହ ।'

ସେ ଲୋକଙ୍କ ମଇଳା ସଫା କରୁଥିଲେ । ମହାତ୍ମା ମୁଁ ବାଡ଼ପଟେ ମଇଳା ସଫା କରିବ । ତମେ ସଫା କରନ ।'

Digitized by PPRACHIN, SOA

ସୁହାସିନୀ ଚଡ଼ଇଠି ମାରିବାକୁ ଧାଇଁଲା । ବୁଢ଼ା ସାଧୁ ମହାନ୍ତ ବସି ଉଠିଲେ । ଅରବନ୍ତୁ କରୁଣା ପାଣ୍ଡିକଲା, 'ହଇରେ ପ୍ରଦୀପ ! ଏ କ'ଣ ।'

ପ୍ରଦୀପ ଚୁପ୍ ହେଇଗଲା, ବୁଢ଼ା ପଚାରିଲେ, 'ହଇରେ ତୁ ବଇଦ ଡାକିଲୁ ନାହିଁ ।'

ପ୍ରଦୀପ—'ଡାକିଲି ଯେ ସେ କହିଲେ ତୁ ମତେ ନେଇଯାଅ ।'

'ଆଣିଲୁ ନାହିଁ ।'

'କ'ଣ ମୁଣ୍ଡେଇ କରି ଆଣିଥାନ୍ତୁ' ।

'ନାଇଁ, ଗୋଡ଼ ଧରିକି' ।

'ମୁଁ ଘୋଷାରିକି ଆଣି ପାରନ୍ତି ନାହିଁ' ।

'ହଇରେ ତତେ କଏ କହିଲା ଘୋଷାରିକି ଆଣିବାକୁ ।' ବୁଢ଼ା ହସିଲା । ସୁହାସିନୀ ସୁଯୋଗ ପାଇ କହିଲା 'ବୁଦ୍ଧିରେ ଟିକେ ପିମ୍ପୁଡ଼ି ଦେଇନୁ, ଏ ପୁଣି ମାଜିଷ୍ଟ୍ରେଟ୍ ହେବ ।'

'ଏଇନେ ସିନା ମାନୁଛୁ । ମାଜିଷ୍ଟ୍ରେଟ ହେଲେ ତମକୁ ବାନ୍ଧିବ ।'

'ହଉ ଥାଉ, ସେ ଆଜ୍ଞେ ସ୍କୁଲ ବେଳ ହେଲାଣି । ଠିକ୍ ସମୟରେ ନଗଲେ ନାମ କଟେଇ ଦେବ । ତୁ ମତେ ଏମିତି କହୁଛୁ ମୁଁ ସାରଙ୍କୁ କହିବି ।' ପ୍ରଦୀପ ଫେରିଗଲା । ଡାକ ଡାକ ହେଇ କହିଲା, 'ତୁମେ ତ ମୋତେ କେଣି ଚଡ଼ାଉଛ ।' ବୁଢ଼ା କହିଲେ, 'ନାଇଁବା ମୁଁ ଯାଇ ସାରଙ୍କୁ ବୁଝାଇ ଦେବି । ମୋ କଥା ନ ଶୁଣି ତା କଥା

Digitized by PPRACHIN, SOA

ନଏ ଶୁଣିବେ ।' ପ୍ରଶାନ୍ତ ଖୁସୀ ହୋଇ ପ୍ରସ୍ତୁତ ହେବାକୁ ଗଲା । ସେଇ ଭଉଣୀ ପାଖରୁ ଗଲା ପରେ ବୁଢ଼ା ଏକା ବସିଥିଲେ ବାରଣ୍ଡାରେ । ମନେ ପଡ଼େ ପିଲା ବେଳ କଥା । କୃଷ୍ଣେନ୍ଦୁ ନାଚ ଗଣ୍ଡେଇ ପରେ ସେ ଅଭିନେତା ହୋଇ ବସେ । କେବେ କେବେ ନାଟ୍ୟକାରକୁ କହେ, 'ମତେ ସେ ଅର୍ଜୁନ'କୁ ଟିକେ ଦବନି ।' ଉତ୍ତର ପାଏ 'ସେ'ଟା ଖେଳନା ଲୁହିଁରେ ପିନ୍ଧ ।' କଳାରତ୍ନ ବନ୍ଧୀ ଅଣେ କୃଷ୍ଣେନ୍ଦୁ ନାଁ ଦଏ 'ଅର୍ଜୁନ' । ଏନ ଘରେ ତା ସଙ୍ଗେ କଥା କହେ । ହସ ମାଡ଼ିଲା । ପୂର୍ବ ଉତ୍ଫୁଲ୍ଲ ହୋଇ ପଡ଼ିଲା ବୁଢ଼ା । କିଛି ସମୟ ପରେ ଡାକିଲା 'କରୁଣା, ଆମ ଘରକୁ ଆ, ତୋତେ ଗୋଟାଏ ଜରୁରୀ କଥା କହିବାକୁ ଅଛି ।' କରୁଣା ପଛେ ପଛେ ଚାଲିଲା । ବୁଢ଼ୀ ଅପେକ୍ଷା କରି ରହିଥିଲା । ସମସ୍ତେ ଠାକୁର ଘର ଆଡ଼େ ଗଲେ । ଆଜି ବୋଧେ ପୂଜା ପାଠ କିଛି କରିଛନ୍ତି ନା । ଠାକୁରଘରେ ବାଳଗୋପାଳଙ୍କ ମୂର୍ତ୍ତି । ଠାକୁରଙ୍କ ସାମ୍ନାରେ ତିନିହେଁ ଓଳଗି ହେଲେ । ବୁଢ଼ୀ ତୁଳସୀ ଓ ପ୍ରସାଦ ଆଣିଦେଲା ହାତରେ । ତିନିହେଁ ପ୍ରସାଦ ପାଇ ସାରେ ବୁଢ଼ା କହିଲା 'ବୁଢ଼ୀକି ଆଜି ଭଗବାନଙ୍କ ସମକ୍ଷରେ ଆମର କାମନା ପୂରଣ ହେବ ।' ବୁଢ଼ୀ କହିଲା, 'ଜାଣେ ଲୋ ମୁଁ ଜାଣେ ।' କରୁଣା ବୁଝିପାରୁ ନଥିଲା । ବୁଢ଼ା କହିଲା, 'କରୁଣା ବସ୍ ଏଠି ଠାକୁର ପାଦତଳେ ।' ନିଜେ ବି ବସିଲା । ବୁଢ଼ୀକୁ କହିଲା, 'ସାହା ଭାଲ କହିଥିଲି ଆଣ ।' ବୁଢ଼ୀ ବୁଜୁଲାଟିଏ ଆଣି ଠାକୁରଙ୍କ ପାଦତଳେ ଥୋଇଲା । ବୁଢ଼ା ବୁଜୁଲାଟି ଟେକି ଧରି କହିଲା । 'କରୁଣା ଗ୍ରହଣ କର ।'

'କ'ଣ ଜେଜେ ଏ କ'ଣ ?'
'ତୁ ନିଏ ମା, ଏ ମୋର ନାତୁଣୀ ଜୋଇଁ ପାଇଁ ।'

Digitized by PPRACHIN, SOA

'ନେକେ !'

ବୁଢ଼ା କହିଲା—'ଧର । ସୁବୋଧ ଭଲ ଛୁଆ ଥିଲା । ଏ ଟଙ୍କା ତାକୁ ଦେବ ସେ ବହିପତ୍ର କିଣିବ । ମୁଁ ତାକୁ ପରାମର୍ଶ ଦେଉଛି ଯେ ଏମ୍. ଏ. ପଢ଼ୁ । ତାକୁ ଏ କ୍ଷେତ୍ରରେ ଆମର କିଛି ସାହାଯ୍ୟ କରିବା କଥା ।'

କୃତଜ୍ଞତାପୂର୍ଣ୍ଣ ଆଖିରେ କରୁଣା କେବଳ ଅନେଇ ଥିଲା । ବୁଢ଼ା କହିଲା—'ସୁବୋଧକୁ ପଢ଼ାପଢ଼ି ଦିଗରେ ଉତ୍ସାହିତ କରିବା ପାଇଁ ବହୁ ଆଗରୁ ଖଟୁଥିଲି । ସୁବୋଧ ପଢ଼ିବାକୁ ରାଜି ହୋଇଛି । ତୁ ତାକୁ ଦବୁ ବହି କିଣିବା ପାଇଁ । ଯେପରି ସେ ଏହାକୁ ଦାନ ବୋଲି ନ ଭାବେ । କମଳାଙ୍କୁ ଦେବୁ, ସବୁ ବୁଝାଇଦେବୁ । ସେ ବଡ଼ ବୁଦ୍ଧିମତୀ । ସବୁ ଚଳେଇ ନେବ ।'

ବୁଢ଼ୀ କବାଟକୁ ଆଉଜି ଠିଆହୋଇଥାଏ । କିଛି ସମୟ ରହି ବୁଢ଼ା ଅଧୁରା କଥାଟି ଆରମ୍ଭ କଲା । 'କରୁଣା ତୁ ତ ଜାଣୁ, ଆମେ ଦୁଇ ପ୍ରାଣୀ ସଂସାରରେ କେତେ ଏକୁଟିଆ । ତୁମ ପରିବାର ପାଖରେ ଥିବାରୁ ମନଟା କେବେ କେବେ ହାଲୁକା ଲାଗୁଛି । ମୋ କଥା ମୁଁ ବା ଚଳେଇ ନିଅନ୍ତି ହେଲେ ମା ସଦାବେଳେ ମନ ଦୁଃଖ କରନ୍ତି । ମୋର ଆଶା କର୍ତ୍ତବ୍ୟ ଦୃଷ୍ଟିରୁ ତୁ ନିଶ୍ଚୟ ତାଙ୍କର ଦୁଃଖ ଦୂର କରିବାରେ ସାହାଯ୍ୟ କରିବୁ ।'

'ଆପଣଙ୍କ ଦୁଃଖ ଦୂର କରିବା ପାଇଁ ମୁଁ ବଡ଼ ଅକିଞ୍ଚନ । କିନ୍ତୁ ପଦ ଦରକାର ହୁଏ ଜୀବନ ଦେବାକୁ ପ୍ରସ୍ତୁତ । ଆପଣ ମୋ ଘର ଜଣେ ସାହା ଭରସାହୀନ ପ୍ରାଣୀ ପାଇଁ ଯାହା କରିଛନ୍ତି ତା ତୁଳନାରେ ମୋ ଜୀବନଟା କିଛି ନୁହେଁ ।'

Digitized by PPRACHIN, SOA

ବୁଢ଼ା ମୂର୍ତ୍ତିଟେ ତ ଧୀରେ ଧୀରେ ହସୁଥିଲା । କିନ୍ତୁ ତାକୁ ପ୍ରଶଂସା କରୁଥିବା ମଣିଷଟିର ମୂର୍ତ୍ତିକୁ ସଳଖି କରି ରଖିବାକୁ ଲାଜ ଲାଗୁଥିଲା ତାକୁ । ଝିଅଟି ଉଠି କହିଲା—'ତା ହେଲେ ସତ୍ୟ କର ।'

'ସତ୍ୟ କଲି, ତିନିବାର ସତ୍ୟ କଲି ।'

ବୁଢ଼ା କହିଲା—'ମୁଁ ଚାହେଁ ଏ ଘର ସମ୍ପତ୍ତି ସବୁସ ବୁଝାଶୁଝା କରିବୁ ତୁ ମୋର ପୁଅ ହିସାବରେ । ମୋ କାହୁର ପୁଅକୁ ମୁଁ ପୁଅ କରିବାକୁ ଚାହେଁ ।'

କରୁଣା ଏତିକିରେ ନିର୍ବାକ ହୋଇଗଲା । କ'ଣ ସେ ଶୁଣୁଛି ଆଜି । ଏତେ ବଡ଼ ଦାନ ପାଇଁ ସେ ଯୋଗ୍ୟ କି ? ସମସ୍ତେ ତାକୁ କହନ୍ତି ନିର୍ବୋଧଟାଏ । ଭାଇ ତ ସଦାବେଳେ ଛି ଛି, ମାର ମାର କରନ୍ତି । କିନ୍ତୁ ଏଇ ବୁଢ଼ାଙ୍କ ପ୍ରାଣରେ ତା ପାଇଁ ଏତେ ମମତା ! ମନେ ମନେ ଭଗବାନଙ୍କୁ ଡାକୁଥିଲା କରୁଣା । 'ପ୍ରଭୁ ମୁଁ କ'ଣ ଦେଇଛି କାହାକୁ । ମୋତେ ଏତେ ସ୍ନେହ ସୌଭାଗ୍ୟ ଅଜାଡ଼ି ଦେଉଛ ?' ଭାଇ ସେଦିନ ସମ୍ପତ୍ତି ଛଡ଼େଇ ନେଲା । ବସ୍ତୁ ଖଣ୍ଡେ ବାସନ ମଧ୍ୟ ପାଇନି ସେ । ଆଜି ଏ ଅଯାଚିତ ଦାନ କଥା ଭାବି ସେ ଜଡ଼ ପାଲଟି ଯାଇଥିଲା । ସଂସାରରେ ପରପୀଡ଼କ ଯେତେ ଅଛନ୍ତି ସ୍ନେହ ଶ୍ରଦ୍ଧା କରିବା ଲୋକ ସେତେ ଅଛନ୍ତି । କ୍ଷଣକ ପାଇଁ କରୁଣା ସବୁ ଭୁଲିଗଲା । ଭାଇକୁ ତାର ସେ କ୍ଷମା କରିବାକୁ ଲାଗିଲା । ନୀରବ ହେବାର ଦେଖି ବୁଢ଼ା ପଚାରିଲା, 'କରୁଣା ତୁମ ରାଜି କି ?'

ଥରଥର କଣ୍ଠରେ କରୁଣା କହିଲା—'ଆପଣଙ୍କର ଯାହା ଇଚ୍ଛା ।'

Digitized by PPRACHIN, SOA

ସେଇ ମୁହୂର୍ତ୍ତରେ କରୁଣା ବୁଢ଼ାବୁଢ଼ୀଙ୍କ ପାଦତଳେ ନଇଁ ହୋଇ ପ୍ରଣାମ କଲା । ଚେଧୂଳି ନେଇ ମୁଣ୍ଡରେ ମାରିଲା । ବୁଢ଼ୀର ଆଖି ଲୁହରେ ଛଳଛଳ ହୋଇ ଯାଉଥାଏ । ମନେ ପଡୁଥାଏ ସେ ଦିନର କଥା ଯେଉଁଦିନ ସୁନାସିଂ ତା'ର ଛାତିରେ ଅଙ୍କୁଶ କାଢ଼ୁଥିବ । ସୁନାସିଂର ପଦାଘାତରେ ବୁଢ଼ୀର ଗୁଣ୍ଠତଳେ କି ପ୍ରକାର ଏକ ବ୍ୟଥା ସେ ଅନୁଭବ କରୁଥିଲା । ଆଜି କରୁଣାକୁ ଦେଖି ସେଇ ବ୍ୟଥା ବାରମ୍ବାର ଜାଗ୍ରତ ହେଉଛି । କରୁଣା ଗଲା ପରେ ବୁଢ଼ୀର ମନ ଚଞ୍ଚଳ ହୋଇଉଠିଲା । ବାଉଁ ଆଡ଼କୁ ଯାଇ ଡ଼ାକ ପକାଇଲା, 'ଆରେ ବାପୁଆ ଶୀଘ୍ର ଆ ।'

'କ'ଣ ପାଇଁ ଏତେ ତରତର ମ ?' ବୁଢ଼ାର ଚୁଟିରେ ଜଉର ଦେଉଥିଲା ବୁଢ଼ୀ, 'ପୁଅ ବୋହୂ ଆସିବେ । କ'ଣ ଯେ ରାନ୍ଧି ଦେବ କହିଲ । ସେ ଦ'ବର୍ଷର ଘର ଚୁନ ସିମେଣ୍ଟ କରିବାକୁ ହେବ । ବାଟ ଘରଟା ଅରମା ପଡ଼ିଛି ତାକୁ ବାଡେଇବ ତ । ପିଲାଏ ଚଳିବେ କପରି ? ବାପୁଆକୁ ଡ଼ାକ କହି ବନ୍ଦବସ୍ତ କରିବ ।'

'ଆଜ୍ଞା ସବୁ କ'ଣ ହେବ ?' ଆଖି ଟେକି ମୁହଁ ହଲାଇ ବୁଢ଼ା ପଚାରିଲା । ବୁଢ଼ୀ ଲଜେଇ ଗଲା । ଜନ୍ମ ଭଲୁ ହେଉଥିଲା ଯାଇଁ ପିବାକୁ କରୁଣା ଘରଆଡ଼େ । ଇଚ୍ଛା ହେଉଥିଲା ସୁଣ୍ଟେଳେ ସୁନାସିଂକୁ କୁଣ୍ଢେଇ ଧରିବାକୁ । ବୁଢ଼ା କହିଲା, 'ହଇ ତମେ ମାଡ଼ା କରୁନ କର । ମୁଁ ସପ୍ତାହ ଦିନ କରୁଣାକୁ ନେଇ କୋର୍ଟକୁ ଯିବ । ମୋ ପୁଅ ବାମଟା ଆଜି ବଳରେ ସିଝି ହେଉ ତୁଅନେ ।'

Digitized by PPRACHIN, SOA

କରୁଣା ଘରକୁ ଫେରିଆସି ଚୁପ୍ ଚାପ୍ ବସି ରହିଲା । ତା'ହାତରେ ସେପରି ବୁଜୁଳାଟି ଧରିଥାଏ । କମଳିନୀ ବୋଉ ଆସି ପଚାରିଲା, କ'ଣ ହେଲା ? ହାତରେ ସେ କ'ଣ ? କରୁଣା କଥାରେ କିଛି ପ୍ରକାଶ କରିପାରୁ ନ ଥାଏ । ଟଙ୍କା ବୁଜୁଳିକୁ ମୁଠାରେ ଚାପିଧରି ଆନନ୍ଦ ଆଶ୍ଚର୍ଯ୍ୟରେ ସେ ଚାହିଁ ରହିଥାଏ ମା' ଆଡ଼େ । କମଳିନୀ ବୋଉ ବାରମ୍ବାର ପଚାରୁଥାଏ, 'ଏ କ'ଣ ମ, କିଛି କହୁନ କାହିଁକି ?'

ଗଦ୍‌ଗଦ୍‌କଣ୍ଠରେ ସେ ଉତ୍ତର ଦେଲା, 'ଏ ଟଙ୍କା'

'କି ଟଙ୍କା ?'

'ମୁଁ ପାଇଛି ।'

'ତମେ ପାଇଛ ? ସାଧୁ ଜେଜେଙ୍କ ପାଖରେ ଗପ ଶୁଣିଥିଲ । ତେଣୁ ଏମିତି କଥା କହୁଛୁ ।'

'ହଁ ସ୍ୱପ୍ନ ଦେଖିଛନ୍ତି । ଏ ସବୁ ସୁବୋଧ ପାଇଁ । ସୁବୋଧ ପାଠ ପଢ଼ିବ ।'

କମଳିନୀ ବୋଉର ମନ କୃତଜ୍ଞତାରେ ପୂରି ଉଠୁଥିଲା । କେତେ ଭଲ ପା'ନ୍ତି ସାଧୁ ଜେଜେ ଏ ପରିବାରକୁ ! କ'ଣ ଦେଇ

Digitized by PPRACHIN, SOA

ଏ ଦାନର ପ୍ରତିଦାନ କରି ପାରିବେ ସେମାନେ । କରୁଣାକୁ ଲାଗିଲା 'କେଉଁ ଜନ୍ମରେ କି ପୁଣ୍ୟବଳରେ ଆମେ ତାଙ୍କୁ ପାଇଛେ । ନଚେତ୍ ଆମେ କିଏ ସେ କିଏ ? ସେ କାହିଁକି ଆମ ପାଇଁ ଦରଦ ଦୁଅନ୍ତେ । ପଥର ଘର ଠାକୁରଙ୍କୁ କୋଟି ପ୍ରଣାମ ।' କରୁଣା ତାକୁ ଖବରଟା ଜଣାଇଲା ନାହିଁ । କିନ୍ତୁ ବାରମ୍ବାର ଇଚ୍ଛା ହେଉଥାଏ କହି ଦେବାକୁ । ଘରଦ୍ୱାର, ବାଡ଼ ସବୁ ଆଜି ନୂଆ ଲାଗୁଛି । ଟଙ୍କାତକ ଧୀରୁ ଦେଇ ସେ ବୁଲି ବାହାରିଲା । କରଣ ସାହି ପାରିଦେଇ ଗୋଷ୍ଠୀ ଡାଣ୍ଡରେ ପହଞ୍ଚିଲା । ମା ମଙ୍ଗଳାଙ୍କ ପାଖରେ ମୁଣ୍ଡିଆ ଟିଏ ମାରି ଗଡ଼ିଏ ପ୍ରାର୍ଥନା କଲା । ତାପରେ ବୁଲିଲା ମଠ ଆଡ଼େ । ବାବାଙ୍କ ସହ ଦୁ' ପଦ ମନଖୋଲା କଥାବାର୍ତ୍ତା କଲା । ଚଣ୍ଡୀପାର ପାଦୁକ ମାଗିଲା । ସେଠୁ ସେ ଗଲା ମହାରଣା ସାହି । ସେଠୁ ପୁଞ୍ଜି ମାଳ ସାହି । ତହୁଁ ଗଉଡ଼ ସାହି । ପରେ ପରେ ଟ୍ରାଟ, ବଜାର ସାହି, ବି.ଡ଼ି.ଓ. ଅଫିସ, ଡାକ୍ତରଖାନା, ପାଠାଗାର, ହାଇସ୍କୁଲ ସବୁଆଡ଼େ ବୁଲି ଆସିଲା । ଏତେ ଖୁସୀ ଏତେ ତୃପ୍ତ ସେ କେବେ ଦେଖାଯାଇ ନ ଥିଲା । ଘରକୁ ଫେରିଲା ବେଳକୁ ସଞ୍ଜ । ଏ ଭିତରେ ସେ ପିଂମଣ୍ଟରଙ୍କୁ ଦର୍ଶନ କରି ଫେରିଆସିଛି । ଘରକୁ ଫେରି କ୍ଳାନ୍ତ ଦେହଟି ପରି ଘୁମେଇ ପଡ଼ିଲା । ପୁଅ ଝିଅ ମା ଶେଫାଳି ବୃଦ୍ଧ କର୍ତ୍ତାଙ୍କର ଆଜିର ଭାବ ଦେଖି ବିସ୍ମିତ ହେଉଥିଲେ । କିନ୍ତୁ ତାର ଏତେ ଖୁସୀ ଭାବ ଦେଖି ସେମାନେ ବି ଆନନ୍ଦ ବୋଧ କରୁଥିଲେ । ତେଣୁ କେହି ତାକୁ କିଛି ପଚାରୁ ନଥିଲେ । କିନ୍ତୁ ଶେଷରେ ପତ୍ନୀ କହିଲା । 'ସାଧୁ କେବେ ଆସିଥିଲେ । କହୁଥିଲେ ପଅରଦିନ ତୁମେ କ'ଣ ପ୍ରସ୍ତ ଦିବ । ତାଙ୍କ ଛୁଟି ପାଇଁ ଦରଖାସ୍ତ କରିବ ।

କରୁଣା ଉତ୍ତର ଦେଲା—'ମୁଁ ଜାଣିଛି ।'

Digitized by PPRACHIN, SOA

ସ୍ୱଚ୍ଛରେ କରୁଣା ନିର୍ଯୋଗ୍ତ ଭାବରେ ଶୋଇଥାନ୍ତେ । କିନ୍ତୁ ରାତି ଶେଷ ପ୍ରହରରେ ହଠାତ୍ ସେ ନିଦରୁ ଉଠିବସିଲେ । ଦେହ ମୁଣ୍ଡ ଥରୁଥାଏ । ଏ କି ଅଦ୍ଭୁତ ସ୍ୱପ୍ନ । କମଳିନୀ ବୋଉଙ୍କୁ ଡାକି ଉଠାଇଲେ ସେ । କମଳିନୀ ବୋଉ ପଚାରିଲେ, 'କଥା କ'ଣ ?'

'ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଲି । ଦେଖ ମୋ ଦେହ ଥରୁଛି ।' ଟଙ୍କା ପାଇବା ଠାରୁ ଏ ପର୍ଯ୍ୟନ୍ତ ସ୍ୱାମୀଙ୍କର ଏ ହାବଭାବ ଦେଖି ତାଙ୍କୁ ଚିନ୍ତା ଲାଗୁଥିଲା । ଏବେ ଡର ବି ଛୁଇଁଲା ମନକୁ । କପିଳେଶ୍ୱରଙ୍କୁ ମନେ ମନେ ଧ୍ୟାନ କରି ପଚାରିଲେ, 'କି ସ୍ୱପ୍ନ ଦେଖିଲ ।'

କରୁଣା ଉତ୍ତର ଦେଲେ— 'ହଠାତ୍ ଘର ଆଲୋକିତ ହୋଇଗଲା । ଜଣେ ବାଳକ ଦେଖିବାକୁ ସୁବୋଧ ପରି । କିନ୍ତୁ ସୁବୋଧ ନୁହେଁ । ଧଳା ହାଫ୍ ସାର୍ଟ ପିନ୍ଧିଛନ୍ତି । ଗୋଟିଏ ଦେହ ସହ ମିଶିଯାଉଛି ସାର୍ଟ ରଙ୍ଗ । ମୁହଁଟା ଏତେ ସୁନ୍ଦର ! କେଉଁଠି ଦେଖିଲି ପରି ମନେ ହେଉଛି । କିଛି ମିଶିଯିବ ସୁବୋଧ ମୁହଁ ସଙ୍ଗେ । ମୁହଁରେ ଅତୁଳ ଖୁସି ଭାବ । ମୁଣ୍ଡ, ମୁଖମଣ୍ଡଳ, ହାତ ଓ ପିଠି କରନ୍ତୁ ଜ୍ୟୋତି ନିର୍ଗତ ହେଉଛି । ମଧ୍ୟାହ୍ନ ଆକାଶରେ ସୂର୍ଯ୍ୟର ଯେଉଁ ବଳୟ ଦେଖାଯାଏ ସେଇମିତି ଗୋଟାଏ ବଳୟ ମୁହଁ ପଛପଟେ । ଆଖି ଝଲସି ଯାଉଥାଏ । ପ୍ରତ୍ୟକ୍ଷଟିକୁ ମାତ୍ର ଏକ ସେକେଣ୍ଡ ଦେଖିଥିବି । ସେ ଉଭାନ୍ ହୋଇଗଲେ । କିନ୍ତୁ ଏତେ ଜୋରରେ ସେ ହସି ଉଠିଲେ ଯେ ଘଣ୍ଟାଏ ପରି ଶୁଭିଲା । ମୁଁ ଚମକି ଗଲି । ନିଦ ଭାଙ୍ଗିଗଲା । ଏମିତି ଥରୁଛି ।

କମଳିନୀ ବୋଉ ବିସ୍ମିତ ଚକିତ ଭାବରେ ଶୁଣୁଥାଏ । ପାଟିରୁ ତା' ବାହାରି ପଡ଼ିଲା, 'ଭଗବାନଙ୍କୁ ଦେଖିଲ ତମେ, ଭଗବାନଙ୍କୁ । କେଡ଼େ ଭାଗ୍ୟ ତମର ।'

Digitized by PPRACHIN, SOA

'କଣ ମୁଁ ଅନ୍ଧ ବାଳିକ ?'

'ଉପରେ ନୁହେଁ, ଅଲୌକିକ ଚକ୍ଷୁଷ୍କୁ ଦେଖ । ହେ ଭଗବାନ ସତରେ ତମର ଅମ ଉପରେ ଏତେ ଦୟା ।'

କରୁଣାର ମନେ ପଡ଼ିଲା । କମଳିନୀ ବୋଉକୁ ଲୁଚେଇ ଆଣି ଥିଲା କ'ଣ । କହିଲା—'ଶୁଣିବ ଗାଲିଚ୍ ବଥା ।'

'କ'ଣ ହପଦରୁ ତ ଦେଖୁଛି କେବଳ ।'

'ତେବେ ଶୁଣ । ସାଧୁ କେଜେ ଆଉ ମୋତେ ପୂଅ ବଲେ । ଆଜ ସେ ଠାକୁରଙ୍କ ଆଗରେ ମୋତେ ଗ୍ରହଣ କଲେ ।'

ଘଡ଼ିଏ ରହି କମଳିନୀ ବୋଉ କହିଲା—'ଦେଖିଲ ମୁଁ କହୁନାହିଁ । ସେଇ ଠାକୁର ଆମକୁ ଦୟା କରି ସେ ତମକୁ ଦେଖାଦେଲେ ।' ଗଳବସ୍ତ୍ର ହୋଇ ଭଗବାନଙ୍କୁ ପ୍ରଣାମ ଜଣାଉଥିଲା କମଳିନୀ ବୋଉ । କରୁଣା ବି ଯୋଡ଼ହସ୍ତ ହୋଇ ଆଖିବୁଜି ପ୍ରାର୍ଥନା କରୁଥିଲା ।'



Digitized by PPRACHIN, SOA

ସମସ୍ତଙ୍କର ଅଜାଣତରେ ଏତେବଡ଼ ଘଟଣା ଘଟିଗଲା । ଶୁଣିଲା ପରେ ଗାଁର ଲୋକେ ସମସ୍ତେ ବିସ୍ମିତ ହୋଇଥିଲେ । କିନ୍ତୁ ବିସ୍ମିତ ହୋଇ ନ ଥିଲେ ମହାଜନ । ମାଧ୍ୱାଧର ପୂର୍ବରୁ ସନ୍ଦେହ କରୁଥିଲେ । କିନ୍ତୁ ଏତେ ସଂପତ୍ତି ପରକୁ ହସ୍ତାନ୍ତରିତ ହେବ ବୋଲି ସେ କେବେ ଭାବି ନ ଥିଲେ । କଷ୍ଟକର ଭାବେ ମାଳମା ହାତରେ ସେ ଧରମୁକୁ ଉଠାଇଥିଲେ । ଆଖି ଆଖି କହୁଥିଲେ—'ହୋଲ ମୂର୍ଚ୍ଛିମୀ ଡାକ ହୋଇଗଲଣି । ଡେଣ୍ଟ୍ରୁ ବଂସ୍ତ ହୁଅନ । ଆରେ ବାବା ଚିତ୍ତ ହେଲେ କଷ୍ଟ ହୁଏନ । ବୁଦ୍ଧି ଲୋପ ହୋଇ ଭାନ କରିବାକୁ ହୁଏ ।

ଧରମୁ କହୁଥିଲା—'ମୁଁ ଠିକ୍ ଅଛି ବାବୁ । କହିଲା ମାତ୍ରେ ଉଠିବାକୁ ମୋଡ଼ିହେବ । ଆପଣ ଯେପରି ନ ବୁଝନ୍ତୁ ।'

ମାଧ୍ୱାଧର କହିଲେ—'ସେଦିନ ସନାତନ କ'ଣ କହୁଥିଲା ?'

'କ'ଣ ବାବୁ ?'

'ସେଇ ସାଧୁ ମହାତ୍ମା କଥା ।'

'ନା ବାବୁ, ସେ କଥା କେବେ ହବନି । ସେ ବୁଢ଼ା ଲୋକ ଆପଣଙ୍କର କେଜେ । ସନାତନଟା ବଡ଼ ହୁଙ୍ଗିଜଆ ।'

ମାଧ୍ୱାଧର ଚୁପ୍ ରହି କ'ଣ ଭାବିଲେ । କହିଲେ—'ନାଇଁ ତ । ସନାତନ ତ ଆଜି ସାଧୁ ମହାତ୍ମା ଘର ଚାଇଟର ଲୁହେଁ ।'

Digitized by PPRACHIN, SOA

ଧରମୁ ସୁଙ୍ଘିଲା ମାପ୍ୱାଧରର ମୁହଁକୁ । ସେ ମୁହଁରେ କୋ୍ପାନର ସଙ୍କେତ । ଧରମୁ ପ୍ରଥମେ କିଛି ଜାଣି ପାରିନା ନାହିଁ । ପରେ କହିଲା—'ଆପଣ ଭୁଲିଲେ ମୁଁ ସବୁ କହିଦେବି ।'

'କଣକୁ ?'

'ଅଳ୍ପ ନଷ୍ଟ କରିବ ।' ଜୋରିଦେଇ କହିଲା ଧରମୁ ।

'ଶପଥ କର ।'

'କପିଳେଶ୍ୱରଙ୍କ ନାଁରେ ଶପଥ କଲି ।'

'ଯା, ଠିକ୍ ହେଲେ ଡାକିବି, 'ଧରମୁ ଜୁହାର କରି ଫେରୁଥିଲା । ମାପ୍ୱାଧର ଡାକିଲେ । 'ଶୁଣ, ସ୍ନିଗ୍ଧି ଲେ ଖାଇଯା, ଧରମା ଦାଣ୍ଡ ଦୁଆରେ ବସି ରହିଲା ।

ଆଜି ବାରମ୍ବାର ମନେ ପଡୁଛି । ସେଦିନ ଦଣ୍ଡ ଧରମୁକୁ ଆଦେଶ ଦେଇଥାନ୍ତି ମୁଳରୁ ସବୁ ଲୁଚିଥାନ୍ତା । ନିଜ ଉପରେ ଓରକ୍ତ ହୋଇ ଅସ୍ଥିର ହୋଇ ପଡୁଥିଲେ ମାପ୍ୱାଧର । ବୁଢ଼ା କ ଅପମାନ ଦେଲା ମତେ ! ବାର ଏକର ଜମି । ଘର ଡ଼ିହ ସବୁ ଦେଲା । କହୁଣା ବାପୁଡ଼ା ଏବେ ସମ୍ପତ୍ତିର ଅଧିକାଂଶ ଦେବ । ପୁଣି ତା ଅନ୍ତେ ଗ୍ରୁପର ପାଇବ ସେ ସବୁ । ନୋ ପ୍ରଭୁ ପିଲାଙ୍କ ସ୍ୱପ୍ନର ପାଞ୍ଚ କେଉ ଜମି ମାଗଂଗଉଛି । ଅଥଚ ଏକା ପ୍ରଧାନ ହେବ ବାର ଏକର । ସ୍ତ୍ରୀ ଆସି ହିଂସାରେ ଗର୍ଜିଲେ, 'ଓମ ଦାଓ କିଛି ଦେବନି । ବୁଢ଼ାକୁ ଉଚାନା ବେଳ ବାରମ୍ବାର ମୁଁ କହୁଛି । ଭ'ଣ ମିଳିବ ସେ ମେର ନଅଁ ଭୁଲ୍ କଲେନାହିଁ ।'

Digitized by PPRACHIN, SOA

ଅପଦସ୍ତ ହେଲାପରି ମନେ କରୁଥିଲେ ମାଧ୍ୱାଧର । ସାନପୁଅ ଖେଳା ଆସି ଘରେ ଅଛି । ଆସିବା ପରଠୁ ସେ କେଇ ବାର ବୁଢ଼ା ଘରକୁ ଯାଇଥିଲା, ଭଲମନ୍ଦ କଥା ହେଉଥିଲା । କିନ୍ତୁ ତା'ର ମୁହଁମା ଚର୍ଚ୍ଚିଆର ଘୋଡ଼ନ୍ତି ଭିତରେ ଏତେ ବଡ଼ ଘଟଣାର ଉଣ୍ଡ ନିର୍ଣ୍ଣୟ କରି ପାରି ନଥିଲା । ଶୁଣିଲା ପରେ ମୁହଁ ଶୁଖାଇ ଦ୍ରୌପଦୀଙ୍କୁ ସବୁ କହିଲା । ଆଜି ମା ପୁଅ ଉଭୟେ ମାଧ୍ୱାଧର ଉପରେ ଖଡ୍ଗହସ୍ତ ।

ପୁଅ କହୁଥିଲା, 'ସ୍ୱାଙ୍କର ଲାଗି ଆମର ସବୁଗଲା । ନହେଲେ ମତେ ପୁନ୍ତ ବୁଢ଼ା କରୁଣା ଦାଦ କାହିଁକି ପୁଅ କରିଥାନ୍ତା । ସେ କ'ଣ ଗୋଟାଏ ମଟିକ ଲେଖା । ତାଙ୍କୁ କିଏ ଚିହ୍ନିଛି । ମତେ କଂଗ୍ରେସ୍, କମ୍ୟୁନିଷ୍ଟ, ସୋସାଲିଷ୍ଟ ସମସ୍ତେ ନେତା ବୋଲି ମାନନ୍ତି । ମୁଁ ଇଲେକ୍ସନରେ ଜିତିଲେ ନିଶ୍ଚୟ ମନ୍ତ୍ରୀ ହେବି ।' ମାଧ୍ୱାଧର କାନରେ ସାନ ପୁଅ କଥା ତୁଣ୍ଡ ଫୋଡ଼ିଲା ପରି ଲାଗୁଥିଲା । ଚାଟିକରି କହିଲେ,

'ଯେଝେ ହେ ଝର ବୁଝିଆ ତମେ, କୌଣସି ଇଣ୍ଟରଭ୍ୟୁରେ ମ ତମେ ମାତ୍ର ଜଣେ । ଯୋଉଠି ବା ତମ ଭାଇମାନେ ଧରିନେଇ ରଖିଲେ ବୃକ୍ଷ ଅଫିସ । ଏବେ ଖାଇବାପିଣିଆ ଦେଖୁଛନ୍ତ ।'

ଖେଳା ଟଳଟଳ ହୋଇ ଘରୁ ପଳାଇଲା । ମାଧ୍ୱାଧର ଘର୍ଘ ନିଶ୍ୱାସ ପକାଉଥିଲେ । ହାସ୍ୟରେ ଦ୍ରୌପଦୀ, ତୁ କେଡ଼େ ଭାଗ୍ୟବାନ !' ବଡ଼ ପୁଅ ପହଞ୍ଚିଲେ । ବାପା ବୋଉ ସାନ ଭାଇର କଥୋପକଥନ ଶୁଣି ସେ ଯାଇଛି ସମସ୍ତ କ'ଣ ସବୁ ଭାବିଲେ । ତାପରେ ଧିରେ ଆସି ବାପାଙ୍କ ପାଖରେ ଠିଆହେଲେ । ମାଧ୍ୱାଧର ପଚାରିଲେ, କ'ଣ ।

'ବାପା, ତ୍ରୁଟିପ ଏ ଯାତ୍ରିଁ ଭୋଗ କରି ପାରିବ ନାହିଁ ।'

Digitized by PPRACHIN, SOA

'ଆଉ କଣ କରିବ ?'

'ବୁଢ଼ାର ତ କୁଟୁମ୍ବ ଲେକେ ଅଛନ୍ତି ।'

'ସେମାନେ ବୁଢ଼ାକୁ କେଉଁ ଜଙ୍ଗଲ୍ କରି ପାରିବେନ ।'

'ଜଙ୍ଗଲକୁ ଧରିଲେ ।'

'ଜଙ୍ଗଲଟା ଗୋଟେ ଛୋଟା । ସେଇଟା କ'ଣ କରିବ ! ତା ଉପରେ ବିଶ୍ୱାସ ନାହିଁ ।'

'ତେବେ ସୁନ୍ଦର ଗାଁରେ ରହି ପ୍ରଧାନ ଗୋଟେ ବୃଷୀ ଦେବନ ହେବ । ପାଠଶାଳି କଢ଼ିଲେକ ହେଇ ଉତ୍ତରାର କୋଳ କୋଣରେ ରହିଲେ ରହି ପାରିବ ନାହିଁ ।'

'ରହିପାରିବ ନାହିଁ ? କ'ଣ ତମେ କହି ଦେଇ ପାରିବ ?' ଝିଗୁଲେଇ ହେଇ କହିଲେ ମାଧ୍ୟାଧର ।

'ଆପଣ ଆମ ଉପରେ ବିଶ୍ୱାସ ରଖନ୍ତୁ ।'

ନିଜର ବନ୍ଧୁ ପୂଅଟି ମୁହଁରୁ ଏକଥା ଶୁଣି ମାଧ୍ୟାଧର ହସୁଥିଲେ । କ'ଣ ଯାଙ୍କ ଦ୍ୱାରା ହେଇ ପାରିବ ? ଖାଲି ହିଂସା କରିବେ । ପ୍ରଧାନଠୁ କମି ଚଢ଼େଇ ଆଣି ପାରିବେ ସେ ? ଟୋକାଟା ପିଲବେଳୁ ଜଣା ପଡ଼ୁଥିଲା । କେତେ ସୁନ୍ଦର ହେବ । କେତେ ବୁଦ୍ଧି ଖଟାଇ କଷ୍ଟଣାକୁ ଜିତିଲା । ସେ ବୁଦ୍ଧି କ'ଣ ଯାଙ୍କର ଅଛି । ଗୋଟାଏ ଲକ୍ଷ୍ୟରେ ଯାଇଥିବେ । ଯା ଉପରେ ତା ଆଗରେ କହୁଥିବେ । କିନ୍ତୁ ଖାଲି ସାଧନ କ'ଣ ଏମିତି ହୁଏ ? ଜଙ୍ଗଲା କଥା ସେ ବି ଭାବୁଥିଲେ । ଜଙ୍ଗଲା କଥା ମନେ ପକାଇବାରୁ ମାଧ୍ୟାଧର ଅଡାନ୍ତ ହୋଇ ଉଠୁଥିଲେ । ଥରେ ଚେଷ୍ଟା କରିବା ଉଚିତ ।

●

ସାଇ ଅଡ୍ଡାରେ ସାଧୁ ମହାନ୍ତଙ୍କର ଏ କାମର ପ୍ରଶଂସା କରିବାକୁ ଲୋକର ଅଭାବ ନ ଥିଲେ । ବଡ଼କଳା ବୋଉ କଥା ପ୍ରସଙ୍ଗରେ କହି ପକାଇଲା—'ସାଧୁ ସାଆନ୍ତେ ଭଲ କାର୍ଯ୍ୟଟିଏ କଲେ ।'

ଓଧବା ପଗଳି ବୋଉ କହିଲା—'ଭଲ ଲୋକ ଭଲ କାମ କରନ୍ତି ଲୋ ମା । ତାଙ୍କୁ ତ ଭଲ ଲୋକ ଜୁଟନ୍ତି ।'

ଢକଳା ବୋଉ କହିଲା—'ଶୁଣିଲୁ କି, ଲତା ଅଛି ରହିକ କରୁଣା ଘରେ । କରୁଣା ପରୁ ସେ ଘରଟା ଉଛବ ପଣ୍ଡାଙ୍କୁ ଦେଇଛି ।'

ନଟବରର ନାନି ମୁହଁମୋଡ଼ି କହିଲା—'ଦେଇଛି କ'ଣ ଲୋ, ମାସକୁ ମାସ ତ ଭଡ଼ା ନବ ।'

ଚକଳା ବୋଉ କହିଲା—'ଭଡ଼ା କଥା ମିଛ ।'

ଗେଲେଇ କହିଲା—'ନ ଦେଲେ ତ ଘରଟା ତା ନାଁରେ କରିଦେବ । କରୁଣା ମାଇପ ଦେଖାଇ ଦେଉଛି । ବୋଉ ଚଉଦ ପୁରୁଷରେ ଏତେ ଗହଣା ସେ କେବେ ଦେଖିଥିଲା । ଏବେ ଗୁଲି ହୋଇ ବୁଲୁଛି ଛକ ।'

ସପନି ବୋଉ କହିଲା—'ସତେ ! ଦେଖନ୍ତୁ ତାକୁ ଟିକେ । ଅନେକ ଧନ ଦେଲା ଯାଇକି ପିଅନ୍ତେ । ଗହଣା ନାଇ ତ ସେ ଲକ୍ଷ୍ମୀ ପରି ଦେଖା ଯାଉଥିବ ।'

Digitized by PPRACHIN, SOA

ବକଳା ବୋଉ କହିଲା—'ତାଙ୍କି କ'ଣ ସେ ଜମୁଲି ଘର ଝିଅ ହୋଇଛନ୍ତି କି ? ବାହା ହେଲବେଳେ ତ ଭେଟ କ'ଣ ଆଣିଥିଲା । ସୋନ୍ଦିଗୁଡ଼ାକ ଜମ୍ କାଠି ଧରି ଆସିଥିଲେ ସେଇମାନେ ବେଶୀ ଝୁରୁନ୍ତି ।'

ଗେନ୍ଧେଇ ତଣ୍ଟମରୁ ଉଠି କହିଲା— 'ଯେଉଁମାନେ ପେଟ ମୁହାଁଏ ପାଇଁ ସାଧୁ ମହାନ୍ତ ଘର ନଳା ଚାଟୁଥିଲେ ସେମାନେ ସେମିତି କହିବେ ।'

ବକଳା ବୋଉ କହିଲା—'ଯିଏ ଯେ କଥା ଦେଖିଛି ତା'ର ଆଖି ଫୁଟିଯିବ ।'

ଗେନ୍ଧେଇ ରଗରଗ ହୋଇ କହିଲା—'ହଁ ଗୋ ଯାହାର ଆଖି ଫୁଟିଯିବ । ଏ ଦଗିଡ଼ାଏ ସେ ଯୁଆ' ଆଖିରେ ଝାମ୍ପୁଡ଼ ଜଳିବ ।'

ବକଳା ବୋଉ ଏ ପାଟି ଫଟାଇ ଆରମ୍ଭ କଲା—'ଗୋ ସବୁ ପଣ୍ଡିଆ ତ ଜଗତ ବିଖ୍ୟାତ ।' ସପନ ବୋଉ ଦୁହିଁଙ୍କି ବୁଝାସୁଝା କରୁଥାଏ । ବକଳା ଆସି ଦେଖିଲା । 'ଭଲୋ ଖୁଡ଼ୀ କାହିଁକି ପାହି କରୁଛୁ ?'

ଗେନ୍ଧେଇ କହିଲା—'ଦେଖୁନୁ ପୁଅ, ମତେ ତୋ ମା ସଦା ଅପମାନ କରୁଛି । ମୁଁ କହିଲି ସାଧୁ ମହାନ୍ତ ବୁଢ଼ା କ'ଣ ଲୁଟିମ୍ଭୁ ଲୁଟିଲେ ନାହିଁ । ଏଇ କଥାରୁ ମୁଁ ଅପରାଧ ହେଲି ।'

ବକଳା ଗୁମ୍ ମାରିଲା, 'ସାରା ଜଗତ କହିବେ । ତମେ କ'ଣ କରୁଛ ।'

Digitized by PPRACHIN, SOA

ଗେଣ୍ଡୁଲି କହିଲା—'ସେଇ କଥାରେ ପୁଅ । ତୁ ତୋ ମା'କୁ କହ । ଝିଅଟାଙ୍କ କଥାକୁ ସଦାବେଳେ ଅଣ୍ଡଟ ମଣିବ ସେ ମାଇକିନା ।'

ଗେଣ୍ଡୁଲି ଉଠି ଚାଲିଗଲା । ବକଳା ଉତ୍ତେଜିତ ହୋଇ କହୁଥିଲା—'କରୁଣା ପକ୍‌କା ହାରମି । ଏଥର ଯୋଉଠି ତାକୁ ଦେଖିବି ଶୋଧିବ । ଶଳା ଗୋଟାଏ ମାଇକିନା ପାଇଛି ବୋଲି ଗରବ ଦେଖାଇ ହଉଛି ।'

ବକଳା ବୋଉ ସମ୍ଭାଳି ନପାରି କହିଲା—'ହଇରେ ବକଳା ତୋ'ର କଣ ହେଇଛି । କରୁଣା ମାଇପକୁ ତୁ ସପୁରୁ ଛାଡ଼ିକି ?'

ବକଳ କହିଲା—'ମୋ ମୁଣ୍ଡ ଗରମ ହୋଇଛି ।'

ବକଳା ବୋଉ—'ପରୁ ସଙ୍ଗେ ଏମିତି ଲାଗନ୍ତୁ ନାହିଁରେ । କରୁଣା ସଙ୍ଗେ ତୋର ଝଗଡ଼ା ହେଇନି । କାଲି ପରଶିଦିନ କହୁଥିଲୁ ନା କରୁଣା ଘର ପୀଠା ଲକ୍ଷ୍ମୀ । ଏବେ ପୁଣି କ'ଣ ତୋର ଚେଙ୍ଗା ହୋଇଗଲା । ତୋ ମାଇପ ମଲା, ଆଉ ଗୋଟିଏ ବାହା ହେବାକୁ ତତେ କିଏ ମନା କଲା ?'

ବକଳା ମା'କୁ ଅନେଇଲା—'ହଇ ଲୋ ମୋ ବାହା କଥା ପକେଇଲୁ ଏଠି । ମୋର ଦ ଦ୍ଵି ଦ ତ୍ରି । ଆଉ ଗୋଟାଏ ଭାଙ୍ଗିକି ବାନ୍ଧିବ ?'

ବକଳା ବୋଉ—'ମୁଁ ତାଙ୍କୁ ପାଦ ମଣିଷ କରିଛନ୍ତି ! ଖାଲି ଶାନ୍ତ ମଣିଷ ବୋଲି କରୁଣା ଉପରେ ଟେଙ୍ଗା ଉଠାଉଚୁ ।'

Digitized by PPRACHIN, SOA

ବିମଳା—'ତୋର ଭାଣ୍ଜିର କରୁଣା ପାଇଁ ସ୍ୱର ଦରକ ।
ତ'ଣ ତୋ ନିଜ ପୁଲାଏ ଦେଇଚ କ ?

ସପନ ବୋଉ କହିଲ, 'ଆଉ ତକଲ ମାକୁ ଏମିତ କହନ୍ତୁ ।' ବିକଳା ପାଟିକଲ 'ରଖରଖ ତମ ଦୁହାଗିଆ କଥା । କଏ ତମକୁ ପଚ୍ଛୁରେ ।' ମାତ୍ର ମାଢିଲ ପରି କଥାରେ ସପନବୋଉ ତଟସ୍ଥ ହେଲ । ବିକଳା ବୋଉ ଉଠି ସପନ ବୋଉ ହାତଧରି ଘରୁ ବାହାରିଗଲ । ଗଲବେଳେ କହୁଥାଏ 'ଯାହା ତ କୁକର୍ମ କରୁଛୁ ତୋ ପିଲାଏ ଖୋଗୁଛନ୍ତି । ମାମୁଧର କଥାରେ ଚଢ଼ିତ୍ ହୋପିବୁ ଯେ ।' ସପନ ବୋଉ କଛି ନକହି ଚୁଲଥାଏ । ତାର ବିଧବା ସଂସାରରେ ଏ ସବୁ ସପନ । ପୁଅ ଅଛି ନା ଝିଅ ଅଛି । ପୁଅଟିଏ ଥିଲ ସେ ବି ତାଙ୍କ ପଛେ ପଛେ ଆର ପାରି ଚାଲିଯାଇଛି । ଦୂର ବିଦେଶରେ ଚାକରି କରିଥିବା ଭଣଜାକୁ ଆଶ୍ରା କରିଛି । ତାର ଦାନରେ ସେ ବଞ୍ଚି ରହିଛି । ଗାଁ ଘର ଖଣ୍ଡିକ ଜଗି ବସିଛି । ଯେବେ ମରିଯିବ ଭଣଜା ଘରଦ୍ୱାର ବିକିଦେବ । ତା'ର ଆନନ୍ଦଶୂନ୍ୟ ଜୀବନରେ କାହାରି ଶ୍ରଦ୍ଧା ସେ ପାଇନାହିଁ । କିନ୍ତୁ ସେ ଭଲପାଏ ସମସ୍ତଙ୍କୁ । ମଣିଷର ଭଲ ପାଇବାକୁ ମଣିଷହିଁ ଭଲପାଏ ନାହିଁ । ସପନ ବୋଉ ସମସ୍ତିଙ୍କି ଭଲପାଏ । ଏକଥା ଶୁଣିଲେ ସମସ୍ତେ ଖୁସି ହୁଅନ୍ତି ନାହିଁ । ବିକଳା ଭାବେ ତା ବିରୋଧୀ ଲୋକଙ୍କୁ ଯେ ସ୍ନେହ କରେ ସେ ତାର ବନ୍ଧୁ ହୋଇ ନପାରେ । ମାମୁଧରଙ୍କର ମଝି ସେଇ ମତ । ମାମୁ-ଧରଙ୍କଠୁ ମନ୍ତ୍ର ପାଇଁ ବିକଳା ନଞ୍ଜରେ ଠିଆ ହେଇଛି । କେଳେଙ୍କେଳ କୌଶଳରେ କରୁଣାକୁ ଛଳଚଳାନ୍ତ କରିବାକୁ ହେବ । ନଚେତ୍ ସେ ଉଠିଯିବ । ସେତେବେଳ ତାକୁ ଟଣିହେବ ନାହିଁ । ବିକଳାକୁ ଭପୂଲଗେ ସାଧୁ ମହାନ୍ତଙ୍କି ଦେଖି । ସତେ ଯେପରି କଏ ତାର

Digitized by PPRACHIN, SOA

କାନମୋଡ଼ି ଧରିବାକୁ ହାତ ବଢ଼େଇଲ । ସାଧୁମହାନ୍ତିଙ୍କ ଦେହଟାରେ ଝଟକା ଚଟକଣ ଖଣ୍ଡେ ଗାଳେଣ ରେଲଗାଡ଼ିରେ । ସେ କଥା ସେ ଭୁଲିବାକୁ ଚାହିଁଲେ ବି ବାରମ୍ବାର ମନପଡ଼େଇ ଦିଏ ତା'ର ମା । ସାଧୁ ମହାନ୍ତିଙ୍କୁ ଦେଖିଲେ ଡର ଲାଗେ ତାକୁ । ସତେ ଯେପରି ମହାଦେବଙ୍କ ମାରଣା ଷଣ୍ଢ ମାଡ଼ି ଆସୁଛି ମଠର ଭିତରୁ । ଫୋଡ଼ି ଦେବ ତା ପେଟକୁ । ବେଲ ଚାନ୍ଦ ଜହାଙ୍ଗରେ ଝଟକା ଯେପଟେଇ ଦେଉଛି । ଷଣ୍ଢ ଖୁର ଘୁଞ୍ଚୁଛି । 'ଧନ୍ନାସଧାରକ !' ଝଟକା ଝଟକ ହେଇଯାଏ । ମାସ୍ୟାଧର ତା ପିଠିରେ ହାତ ମାରିଛ । 'କହି ଭରି ପାରିବନ ତେ । କିଏ କାହାକୁ ଚଟକଣି ଦିଏ । ଭାଗ୍ୟରେ ନଥିଲେ । ତୁ ବଡ଼ ଭାଗ୍ୟବାନ୍ । ଆଉ ଭାଗ୍ୟବାନର କେନ୍ଦ୍ର ଶଠ୍-ହେଇ ପାରନ୍ତି ନାହିଁ ।' ସେ ଯାହା କହନ୍ତୁ ସାଧୁ ମହାନ୍ତିଙ୍କର ଜକଟଚମ ଘଟେଇ ଦେଲ ସେ । ତାକୁ ଭୁଲିଯିବା ବଡ଼ ଅପମାନର କଥା । ମାସ୍ୟାଧର ଭାଇ ଠିକ କହିଛନ୍ତି, 'ତୋତେ ଏ'ଠା ବାଧିଲାନ ଛାଟରି ଝଟକ । ତୋଠୁ କେଣି ଗୁଣର ବୁଦ୍ଧିମାନ କି'ଣ ଜନ୍ମୁଣା ? ଜନ୍ମୁଣା କି'ଣ ବେଳକ ଲଗାଇ ଦେଇଛୁ ରେ ।'

ଦାନ୍ତ ଚାମୁଡ଼ି ଝଟକା କହିଲା, 'ଅପ୍ପ ଦେଖିବ । ଆଜ୍ଞେ ଦୁଲି ବାଢ଼େ ପଖାଳ ।'



( ୭୨ )

ଗଛରେ ଆମ୍ବ ସବୁ ବଡ଼ ହୋଇଗଲେଣି । ମାଟିଆପଣ୍ଡା ଗାଁର ଛୋଟା ବାଡ଼ ବଗିଚା ସବୁଠି ଆମ୍ବ ଗଛ ଫଳରେ ଭରିଯାଇଛି । ଏ ବର୍ଷ ଆମ୍ବ ଭଲ ଆସିଛି । ଲୋକେ କହୁଛନ୍ତି ମୁଗ ଫସଲ ସେଣୁ ଭଲ ହୋଇନାହିଁ । ବାଡ଼ ବଗିଚାରେ ଯାହାର ଶିମ୍ବ ଗଛ ସବୁ ଥିଲା ସେ ତରତର ହୋଇ ଶିମ୍ବ ସବୁ ତୋଳି ପକାଇଲେଣି । ଦୋଳ ପୂର୍ଣ୍ଣିମୀ ପରେ ଶିମ୍ବ ଆଉ ଖାଇ ହବନି । ଆମ୍ବ ଶିମ୍ବ ଏକାଠି ଖିଆ ବନ୍ଦ । କିନ୍ତୁ ଅନେକ ଏବେ ଏ କଥା ମାନନ୍ତି ନାହିଁ । ଦୋଳପୂର୍ଣ୍ଣିମୀ ପୂର୍ବରୁ ଆମ୍ବ ଖିଆ ଆରମ୍ଭ କରିଦେଲେଣି ଲୋକେ । ଠାକୁରଙ୍କୁ ନ ଦେଇ ଖାଇବା କଥା ପୁରୁଣାକାଳିଆ ଲୋକେ ସ୍ୱପ୍ନରେ କେବେ ଭାବି ନ ଥିବେ । କିନ୍ତୁ ଆଜିକାଲି ସେ ମତ ପୁରୁଣା । ମହାରଣା କହିବାର ଶୁଣାଯାଏ, 'ପୁରୁଣା ମତରେ କିଛି ଗୋଟାଏ ସାମାଜିକ ମୂଲ୍ୟ ଥିଲା । ନୂଆକାଳଏ ସବୁ ଦେଖିଲେ ଅର୍ଥ ଦୃଷ୍ଟିରୁ । ଯାହା ଖାଇଲେ ଦେହକୁ ହିତ, ଯାହା କରିଲେ ପକେଟ ଗରମ ହେବ ସେଇଟା ହିଁ ମତ । ମନ ବଢ଼ିବା ପାଇଁ କାହାର ଇଚ୍ଛା ନାହିଁ ।'

ପୁଅ ସନାତନ ଯୁକ୍ତି କରୁଥିଲା, 'ମଣିଷ ସବୁ କରେ ସ୍ୱାର୍ଥ ପାଇଁ । ସ୍ୱାର୍ଥ ପାଇଁ ବି ସେ ମନ ବଢ଼ିବା କଥା କହେ । ପ୍ରକୃତରେ ମନ ଗୋଟାଏ ବଢ଼ିବ କ'ଣ ? ସୁଖ ଆନନ୍ଦ ଭିତରେ ମଣିଷ ଜୀବନଟାକୁ କଟାଇଦେଲେ ମନଟା ଆପେ ଆପେ ବଢ଼ି ହେବ ।'

Digitized by PPRACHIN, SOA

ମହାରଣା କହିଲେ—'ଦୁନିଆଁରେ କଏ ସୁଖ ଆନନ୍ଦ ପାଇଁ ଚେଷ୍ଟା ନ କରୁଛି କହିଲ । ସେଇ ଭୁଲନାରେ କ'ଣ ସମସ୍ତେ ଆନନ୍ଦ ପାଉଛନ୍ତି ନା ତାଙ୍କ ମନଃ୍କା ବଢୁଛି ?'

ସନାତନ କହିଲା—'ହଁ ନିଶ୍ଚୟ । ଦେଖ ମାୟାଧର ଭାଇଙ୍କୁ । ବଡ଼ଲୋକ ହେଲେ । ସେ ଅନୁସାରେ ତାଙ୍କ ମାନ ବଢ଼ିଲା, ସେଇଥିରୁ ଆନନ୍ଦ ।'

ମହାରଣା କହିଲେ—'ସମ୍ପତ୍ତି ଲାଗି ମଣିଷର ମାନ ସମାଜରେ ବଢିଲେ ମନ ବଢ଼େ ନାହିଁ । ଆଜିର ସମ୍ପତ୍ତି ବା ପ୍ରତିପତ୍ତି କାଲିକୁ ନଥାଏ । ତେଣୁ ସମ୍ପତ୍ତି ବଢିବା ସଙ୍ଗେ ସଙ୍ଗେ ମଣିଷର ମନର ସମ୍ପର୍କ କିଛି ନାହିଁ । ଉତ୍ତମ ଲୋକ ସବୁ ସ୍ତରରେ ଉତ୍ତମ ରହିବ । ଦେଖ ସାଧୁ ଦାଦାଙ୍କୁ । ଦେଖ କରୁଣାକୁ । କାଲି ଯାହା ଥିଲା ଆଜି କ'ଣ ସେ ବଦଳି ଯାଇଛି ?'

ସନାତନ କହିଲା—'କରୁଣା ପଲ୍ଲୀରେ ଥିଲା ଗୋଟାଏ ଝିକାଏ । ଏବେ ଧନପତି । ଏ କରୁଣା ଭିତରେ ତଫାତ୍ ନାହିଁ ।'

ମହାରଣା କହିଲେ—'ତୁମେ ଭୁଲ କରୁଛ । କରୁଣା ପରି କେତେ ଖୋଲା ହୃଦୟ ସେ କଥା ବୁଝି ପାରୁନ ନାହିଁ ତମେ । ନିଜର ପୁତ୍ରମାନଙ୍କ ପାଇଁ ସେ ସର୍ବସ୍ୱ ଦାନ କରିଦେଉଛି । ତୁମେ ଯିନା ଦେଖି ପାରୁନ ପଢିବା ବୁଝିଥିଲେ ଦେଖିପାରିଥାନ୍ତ । ତମେ ସଦାବେଳେ ପଇସା, ଧନ ସମ୍ପତ୍ତି କଥା ଭାବୁଛ । ମୁଁ ତ ସେ କଥା କହୁନି । ମଣିଷର ଭଲ ଗୁଣର ମହତ୍ତ୍ୱକୁ ତୁମେ ସ୍ୱୀକାର କର ତ ।'

Digitized by PPRACHIN, SOA

ସନାତନ କହିଲା—'ଭଲ ମଣିଷକୁ ପରମେଶ୍ୱର ସ୍ୱୀକାର କରିବେ । କିନ୍ତୁ ଭିକାରୀ ପରି ଦେବଦ୍ରବ୍ୟ ନେଇ ଯେଉଁମାନେ ବଡ଼ ଲୋକ ହୋଇଛନ୍ତି ସେମାନଙ୍କ ପାଖେ ଭଲମଣିଷ ସବୁ ଛଳନା ।'

ମହାରଣା କହିଲେ—'ମନ ଯାହାର ଉନ୍ନତ ସେ ଯେ କୌଣସି ପରିବେଶରେ ଶ୍ରେଷ୍ଠ । ମାତାପିତା ନିଜ ସନ୍ତାନକୁ ମାତ୍ର ଦୃଷ୍ଟିରେ ଦେଖେ ।'

ସନାତନ ଏ ମନ୍ତବ୍ୟର କୌଣସି ଉତ୍ତର ଦେଲା ନାହିଁ । ମହାରଣାଙ୍କ ପାଖରୁ ଉଠି ଗଲା । ମହାରଣା ବୁଢ଼ା ମନେ ମନେ ଖୁସି ହେଉଥିଲେ । 'ହେଉତ ପୁଅକୁ ବାଟକରି ।' ସନାତନ ମନେ ମନେ ଭାବୁଥିଲା ସବୁ ଠିକ୍ ହୋଇଯିବ ଦୋଳପୂର୍ଣ୍ଣିମା ଦିନ । ସାଧୁ ମହାନ୍ତି ଦେଖିବା ତାଙ୍କର ବୁଦ୍ଧି କେତେ ? ଏ ଗୋଡ଼ାଣିଆ ଲୋକଟା ସେଇଦିନ ବୁଝିବ ପୁଅର ବୁଦ୍ଧି କେତେ ? ବଡ଼ଦିନ ହେଲା ମହାରଣାଙ୍କର ଦେଖାହୋଇନି ବୁଢ଼ା ସଙ୍ଗେ । ଆଜି କୌଣସିମତେ ଦେଖା କରିବେ । ମହାରଣା ପାନ ଖଣ୍ଡେ ପାକ ବାହାରିଲେ ।

ଆମ୍ବ ଗଛକୁ ବୁଣି ତୋଟାରେ ବସିଥିଲେ ସାଧୁ ମହାନ୍ତି । ପ୍ରକୃତିର ଏକ ଅପୂର୍ବ ଦାନ । ମଣିଷର ଅଭାବ ପୂରଣ କରିବା ପାଇଁ ପ୍ରକୃତିର ଏ କର୍ମତତ୍ପରତା । ଭାବତନ୍ମୟ ହେଉଥିଲେ ସାଧୁ ମହାନ୍ତି । ବର୍ଷ ମାସ ଦିନଦଣ୍ଡ, ଗ୍ରହ ତାରା ନକ୍ଷତ୍ର, ଜୋଆର, ଭଟ୍ଟା, ପର୍ବତ, ନଦୀ ସାଗର, କାନ୍ତାର, ବୃକ୍ଷଲତା ଫୁଲ ଫଳ ସବୁଟି ଯେପରି ଏକ ଅପୂରନ୍ତ ଭଣ୍ଡାର ମଣିଷର ସେବାରେ ସତତ ନିଯୁକ୍ତ । ମଣିଷ ବୁଝିବାକୁ ଚେଷ୍ଟା କରେନା । ସତେ ଯେ ଜଗତରେ ସେ ଏକା ! ଏକା କାରଣ ସେ ଗୋଟିଏ ଘରେ ଏକମାତ୍ର ସନ୍ତାନ । ଏକା

Digitized by PPRACHIN, SOA

କାରଣ ସେ ଭଗବାନ । ଏକା କାରଣ ସେ ସାରା ବସ୍ତୁ ଅବର୍ଜିତ ।
ପଶିଲେ ଜଳ ପାଇଁ ଏ ସବୁର ଅର୍ଥ ଜଣା ବୁଝେ । ବୁଝେ ତ ନାହିଁ
ଖୁବ ବୁଝେ । ଅତୀତର ମୁନିଋଷି ଗ୍ରନ୍ଥକୁ ଭଲ ପାଉଥିଲେ । କେତେ
ସମସ୍ୟାର ସମାଧାନ କରିପାରନ୍ତି ନ ପୁସ୍ତକ ଖୋଲରେ । ସେଇଠି
ଲେଖା ହେଇ ଯିବ ଉପନିଷଦ । ସେଇଠୁ ଜନ୍ମ ହେଲେ ବୁଦ୍ଧ,
ମହାବୀର । ଆମ୍ଭ ଘରେ ଶାଗବାଇଗଣ ଭଜି ଯେପରି ଅବତରି ଠିଆ
ହୋଇଛି । ସାଧୁ ମହାନ୍ତଙ୍କୁ ଅନେକ ବୁଝିବାରେ ଲାଗିଛି ।

‘ବୃକ୍ଷ ଫଳ ଧାରଣ କରିଛି ତାହା ତା’ର ଧର୍ମ ।

ଧର୍ମ ଏକ ଅନନ୍ତ କର୍ମ

କର୍ମ ହିଁ ଏକମାତ୍ର ସତ୍ୟ

ଯାହା ସତ୍ୟ ତାହା ସୁନ୍ଦର ।’

ଘୁଙ୍ଗୁର ଜଣାଇଲ ପ ଆସୁଛ ସେ । ପୁଣି ଜଂକ ମାରୁଥିଲ ।
ମୁଁ ଏଠି ଦେଖୁଛି, ମୁଁ ସୁନ୍ଦର ଖେଳୁଛି । ଏମିତି ଖେଳିବା ମୋର ଗୀତ ।
ଦେଖ ଦୂର ଦେବାଳୟର ଗଗନସ୍ପର୍ଶୀ ଚୂଡ଼ାକୁ । ସେଠି କିଏ? କେହି
ନାହିଁ ? ସେଠି ବି ମୁଁ । ସେଇ ମନ୍ଦିରରେ ଯେ ପୂଜା ପାଏ ସେ କିଏ?
ସେ ବି ମୁଁ । ଯିଏ ପୂଜା କରେ ସେ ବି ମୁଁ । କ’ଣ ବୁଝୁଛ ସାଧୁ
ମହାନ୍ତ । ଏଥିରେ କିଛି ରହସ୍ୟ ନାହିଁ । ଦିବାଲୋକ ପରି ସ୍ପଷ୍ଟ ।
ଶୂନ୍ୟ ଭିତରେ ଶୀଳ । ମହାଶୂନ୍ୟ ଆକାଶର ମଳମ । ତାହା ଉପରେ
ଦେଖ । କିଛି ଏଥିରେ ଗୋପନ କଥା ନାହିଁ । ସେଇ ଏକ ଅନୁପମ,
ଚଳମାନ, ସ୍ପଷ୍ଟ, ସହଜ, ସତ୍ୟର ଚଳନ୍ତି ରୂପ, ଦେଖ । ଅର୍ଥ ଏକ ।
‘ସାଧୁ ମହାନ୍ତ ! ଜଗତ କଠୋର ନୁହେଁ । କଠୋର ନୁହେଁ ଜୀବନ ।

Digitized by PPRACHIN, SOA

ଏଠି ଜଟିଳତା କିଛୁ ନାହିଁ । ସମୁଦ୍ର ଜଳ ଅନେକ ରଙ୍ଗ ଧାରଣ କରେ । ଜଳର ପ୍ରକୃତ ବର୍ଣ୍ଣ ତ ସ୍ୱଚ୍ଛ । ମଣିଷ, ପ୍ରାଣୀ ସମସ୍ତେ ସେଇଆ । ମାମ୍ବାଧର, କରୁଣା, ସନାତନ, ଧର୍ମୁ, ଲତା, ଈଶ୍ୱର, ବସ୍ତୁ ବିଚିତ୍ର ବର୍ଣ୍ଣ କେବଳ । କିଏ କାହାର ବିରୋଧୀ ନୁହନ୍ତି । କୋଇଲିର କୁହୁ ସ୍ୱରରେ ସାଧୁ ମହାନ୍ତ ଚମକି ପଡ଼ିଲେ । ଅବଚାଗ ଆତ୍ମା ସ୍ଖଳଗଲଣି । ବସନ୍ତ ପବନର ସ୍ପର୍ଶରେ ତାର ସ୍ପର୍ଶ ସେ ଅନୁଭବ କରୁଥିଲେ ତଥାପି । ସାମ୍ନାରେ ଆମ୍ବଗଛ କଡ଼ରୁ ବାହାରି ପଡ଼ିଲେ ମହାରଣା ଏ । ହସି ହସି ପଚାରିଲେ ସାଧୁ ମହାନ୍ତି ଅଟ୍ଟହାସରେ—

'କିଏ ତୁମେ ?'

'ଅନ୍ଧା ଭିକାରି କି ବାବା ।'

'ତୁମେ ସେଇ, ଯିଏ ସେ ମନ୍ଦିରରେ ବିରାଜମାନ ।'

'ବାବା ଏ କ'ଣ ?'

'ତୁମେ ସେଇ ପରମ ବିଶ୍ୱାସ ।'

'ତୁମେ ସେଇ ପରମ ସତ୍ୟ—ନୁହଁ କି ?'

ମହାରଣା ପରିସ୍ଥିତିଟା କଳନେଲେ, 'ଆପଣ ଠିକ୍ କହୁଛନ୍ତି ।'

'ତେବେ କୁଆଡ଼େ ଆସିଲେ ?'

'କିଛି ଜାଣେ ନାହିଁ ।'

ବୁଢ଼ା ହସିଲା, 'ନିର୍ବୁଦ୍ଧିଷ୍ଟ—ନୁହେଁ ?'

Digitized by PPRACHIN, SOA

ମହାରଣାଏ ହଁ ଭରିଲେ । ତାର ମୁହଁରେ କଥା ପ୍ରସଙ୍ଗ ବଦଳେଇବାକୁ ଯାଇ କହିଲେ 'ଦାଦା ସ୍କୁଲ ।'

'ସ୍କୁଲ ।'

ଘର ପର୍ଯ୍ୟନ୍ତ ଉଭୟେ ଚୂପ୍‌ଚାପ ଥିଲେ । ଘରେ ପହଞ୍ଚି ଦେଖିଲେ ସ୍କୁଲରୁ ଫେରି ସୁହାସିନୀ ଓ ପ୍ରଦୀପ ମୁହଁ ହାତ ଧୋଉଛନ୍ତି । ସୁହାସିନୀ କହିଲା—'ପ୍ରଦୀପ ଆଜିଠୁ ଟ୍ୟୁସନ ନେବ ।'

ପ୍ରଦୀପ କହିଲା—'ସାର୍ କହିଲେ ଏଥର ଯେପରି ଓଡ଼ିଶାରେ ଫାଷ୍ଟ ହେଉ । ଜିଲ୍ଲାରେ ଫାଷ୍ଟ ହେବା ବଡ଼କଥା ନୁହେଁ ।'

ମହାରଣା ପଚାରିଲେ, 'ପ୍ରଦୀପ ସ୍କଲାରସିପ୍ ପରୀକ୍ଷା ଦେଉଛି ବୋଧେ । ସାଧୁ ମହାନ୍ତି କହିଲେ, 'ହଁ ।'



Digitized by PPRACHIN, SOA

(୨୨)

ଆଜି ଦୋଳ ଉତ୍ସବ । ସାତ ଗାଁର ଲୋକେ ଆଜି ଗାଁରେ । ଚାକିରିଆ ଲୋକ ଛୁଟି ନେଇ ଆସିଛନ୍ତି । ବର୍ଷକର ସର୍ବଶ୍ରେଷ୍ଠ ଉତ୍ସବ ଦୋଳ ଯାତ୍ରା । ଯାହା ଦୁଆରେ ପାଞ୍ଚ ଟଙ୍କାର ଭୋଗ ନ ଲାଗିବ ତାର ବର୍ଷ ଯାଏ ତା ଦୁଆରେ କିଛି ଭୋଗ ହେବ ନାହିଁ । ସନାତନ ଯୁଗରୁ ଏଇ ବିଧି ଚାଲି ଆସିଛି । ଯେ ନିୟମ ଭାଙ୍ଗିବ ସେ ଗୋଟା ଖଣ୍ଡିଆ, ତାକୁ ଦଣ୍ଡ ଦିଆଯିବ, ତା ଦୁଆରେ କେହି ଖାଇବେ ନାହିଁ । ଭୋଜିମନା ହେବ । ସମାଜ ଭିତରୁ କିଏ ଏକା ହୋଇ ରହି ପାରିବ ନାହିଁ । ଏକଦା ଭାରତୀୟର ଅବଚେତନରେ ଏ ଶୃଙ୍ଖଳା ଜ୍ଞାନର ସ୍ଥାନ ଅପ୍ରତିହତ ଥିଲା । ସେଥିପାଇଁ ଏ ଦେଶରେ ଲକ୍ଷ ଲକ୍ଷ ଏକାନ୍ନବର୍ତ୍ତୀ ପରିବାର ବାସ କରୁଥିଲେ । ଗୋଟା ଖଣ୍ଡିଆର ସ୍ଥାନ କେଉଁଠି ନାହିଁ । ଆଜିର ଶୃଙ୍ଖଳାହୀନ ଜୀବନ । କଥା ପ୍ରସଙ୍ଗରେ ପ୍ରଧାନ ଶିକ୍ଷକ କହୁଥିଲେ, 'ଗୋଟିଏ ଗାଁରେ ସମସ୍ତେ ସରକାରୀ ଟଙ୍କା ଋଣ ନେଲେ । ଦୁଇଟି ପରିବାର ଋଣ ସୁଝି ମୁକ୍ତ ହେଲେ । ବାକି ଶହେ ପରିବାର ଋଣ ନ ସୁଝିବାରୁ ଦଣ୍ଡିତ ହେଲେ । ସେଥିରେ କ୍ଷୁବ୍ଧ ହୋଇ ଏ ଶହେ ପରିବାର ଉକ୍ତ ଦୁଇ ପରିବାରଙ୍କୁ ଏକଘରିକିଆ କରି ପାଣି ବାସନ୍ଦ କଲେ ।' ଶୃଙ୍ଖଳା ଜ୍ଞାନ ମୂଳରେ ମଣିଷ ମନର ସ୍ୱେଚ୍ଛାଧୀନତା କାମ କରେ ଏପରି ଉଦ୍ଭଟ ଆଚରଣ ଦେଖାଯିବ । ଏଥି ପାଇଁ ଦିନେ ଯଦୁବଂଶ ଧ୍ୱଂସ ପାଇଥିଲା । ମନରେ ପରସ୍ପର ଈର୍ଷା ଭାବ ଜଳେ ମଣିଷ ଶୃଙ୍ଖଳିତ ହୁଏ । ଏ ଧାରଣା

Digitized by PPRACHIN, SOA

ମାଟିଆପଡ଼ାର ବହୁ ଲୋକଙ୍କ ମନରେ ଏବେ ବି ଦ୍ରବୀଭୂତ ହୋଇ ରହିଛି । ପାଖ ସ୍କୁଲ ଛାତ୍ର ଗାଁ ଲୋକେ ମଧ୍ୟ ଦେଖି ଧରଣର ବଶବର୍ତ୍ତୀ ଥିଲେ । ମାଞ୍ଚ ଠାକୁରରେ ପାଞ୍ଚଟି ବିମାନରେ ବସି ମାଟିଆପଡ଼ାରେ ଭୋଗ ଖାଇଲେ ଘରକୁ ଫେର ବୁଲ । ପଶାଖେଳ, ନଆଁ ଖେଳ, ଷ୍ୟାରେଣ୍ଡ୍, ପାଇକ ଖେଳ, ଚଢ଼େଇଆ ଚଢ଼େଇଆଣି, ପୁତୁଳନାଚ, ଡଳଘୋଡ଼ା, ବୈଷ୍ଣୀ, ବାଣରେ ଦାଣ୍ଡ ଫାଟି ପଡ଼ୁଥାଏ । ସାଧୁ ମହାନ୍ତଙ୍କ ସାଙ୍ଗରେ ପ୍ରତାପ ବୁଲୁଥାଏ । କେତେବେଳେ ହରି ହରି ଉଚ୍ଚ ଧ୍ୱନି କରୁଥାଏ । ଫେରୁ ମେଞ୍ଚା ମେଞ୍ଚା କରି ଭକ୍ତିଆ ଲୋକଙ୍କ ମୁହଁରେ ବୋଲୁଥାଏ ।

ମାଟିଆପଡ଼ା ଗୁଣ୍ଡ ବିମାନବଡୁକ ଖାନପୁର ଅଭିମୁଖରେ ଗଲେ । ସାଧୁ ମହାନ୍ତ ମନା କରିବା ସତ୍ତ୍ୱେ ପ୍ରତାପ ଜିଦ୍ ଲଗାଇଲା ଯିବାକୁ । ଶେଷକୁ ମହାରଣାଏ କହିଲେ 'ଚାଲ୍' । ଆମେ ଫେରି ଆସିବା ଖାନପୁରରୁ । ଖାନପୁର ଗାଁ ମୁଣ୍ଡେ ଭାଗବତ ଘର ପାଖେ ଦୋଳ ଗୁଡ଼ିକ ବସିଲେ । ଖାନପୁରିଆଙ୍କର ପଶାଖେଳ, ନାଗନାଚ, ଆଉ ଅନ୍ୟାନ୍ୟ ଦଳ ପ୍ରସ୍ତୁତ ହେବାକୁ ବିଳମ୍ବ ହେଲା । ଭୋଗଖିଆ ଆରମ୍ଭ ହେଲା ରାତି ଦଶଟାରେ । ପ୍ରତାପ ଖାନପୁରରେ ଏପଟ ସେପଟ ହୋଇ ବୁଲୁଛି । ଏଠି ତା'ର କେତେ ସାଙ୍ଗ । ସମସ୍ତଙ୍କର ଆଦର । 'ଆମ କ୍ଲାସର ଫାଷ୍ଟ ପିଲା ।' 'ଦୋଳମାନେ ଲାଗିଲେ ଯାଇ ଜମିଦାରଙ୍କ ଦୁଆର ସାମ୍ନାରେ । ଏଇଠୁ ଆରମ୍ଭ ହେବ ଭୋଗଖିଆ । ହଠାତ୍ ହରି ମିଶ୍ରେ ଜମିଦାରଙ୍କ ବୁଢ଼ୀମା ଉପରେ ଠିଆହୋଇ ପାଟିକଲେ—

'ଭୋଗ ଖିଆ ବନ୍ଦକର ସବୁ ଅଶୁଦ୍ଧ ହେଇଗଲା ।'

Digitized by PPRACHIN, SOA

ଜମିଦାର ଶୁଣିଲେ । ନିଜ ପୁତ୍ରବଧୂର କ'ଣ ଏପରି ଦାଣ୍ଡି ଭଲେଣି । ସ୍ତବ୍ଧ ହୋଇ ପଚାରିଲେ 'କ'ଣ ହେଲା ଆଜି' ସମସ୍ତେ ଚୁପ୍ ହୋଇଗଲେ । ହେଡପଣ୍ଡିତ ହରି ମିଶ୍ର କହିବାକୁ ଆରମ୍ଭ କଲେ, ସନାତନ ବଧୂ ନୂଆ କ'ଣ ଆମେ ଶୁଣିବା ?'

ଜମିଦାର ପଚାରିଲେ, 'ଏ କଥା କିଏ ଶୁଣିଛି ? ଆମର ପକ୍ଷରୁ କ'ଣ କିଛି ତ୍ରୁଟି ହେଲା ।' ହରି ମିଶ୍ର କହିଲେ, 'ଦୋଷ ଆମର ନାହିଁ । ଦୋଷ ଅପରାଧ କରିଛନ୍ତି ମାଟିଆପଣ୍ଡା ବାଳିଏ । ସନାତନ, ମାଧୁଧର ଧରମୁ ପ୍ରଣ୍ଣ କରୁ ନ ଜାଣିଲାପରି ଶୁଣିଲେ । ସାଧୁ ମହାନ୍ତ, ମହାରଣାଏ ଆଶ୍ଚର୍ଯ୍ୟ ହେଲେ । କଥା କ'ଣ । ପ୍ରସାଦ ଓ ମାଟିଆପଣ୍ଡା ନାଁ ଶୁଣି ଚନ୍ଦନ ଜାତି ଜେଜେଙ୍କ ପାଖରେ ଆସି ଠିଆହେଲା । ଜମିଦାର ବୁଝିଲେ ସାଧୁ ମହାନ୍ତଙ୍କୁ । ସାଧୁ ମହାନ୍ତ ବୁଝିଲେ ହରି ମିଶ୍ରଙ୍କ ଆଡ଼େ ।

ହରି ମିଶ୍ରେ କହିଲେ, 'ଆପଣ ଜଣେ ଅଗ୍ରଣୀ ଲୋକ । ଆପଣଙ୍କର ଉପସ୍ଥିତିରେ ଏତେ ବଡ଼ ପାତକପୂର୍ଣ୍ଣ କାର୍ଯ୍ୟ ଘଟର ଘଟୁଛି ।'

ସାଧୁ ମହାନ୍ତ ବିନମ୍ର ହୋଇ ପଚାରିଲେ, 'କୁହନ୍ତୁ, ଆମର ଦୋଷ କ'ଣ ?'

ହରିମିଶ୍ର ଗମ୍ଭୀର ଝାଡ଼ କହିଲେ, 'ଏ ଉଦ୍ଧବ ପଣ୍ଡା କି କେଉଁ ଜାତିର ଲୋକ ?'

ଶାସନପୁରିଆ ବ୍ରାହ୍ମଣ ଗୋଷ୍ଠୀ ହସାହସି ହେଲେ । ମାଧୁଧର ଓ ସନାତନ ମୁଣ୍ଡପୋତି ବସିଥାନ୍ତି । ଧରମୁଁ ଶ୍ରେଷ୍ଠ ଦାଢ଼ ଟେଣ୍ଟରେ ଟେକେ ରାଗ ବାହୁଥାଏ ।

Digitized by PPRACHIN, SOA

ସାଧୁ ମହାନ୍ତ ଉତ୍ତର ଦେଲେ, 'ଉଦ୍ଧବ ପଣ୍ଡା ବ୍ରାହ୍ମଣ କୁଳ ବ୍ୟତୀତ ଅନ୍ୟ କେଉଁ କୁଳରେ ଜନ୍ମ ହୋଇଛନ୍ତି ବୋଲି କିଏ ପ୍ରମାଣ ଦେଇ ପାରିବେ ?'

ହରି ମିଶ୍ର ଉତ୍ତେଜିତ ହୋଇ କହିଲେ, 'ବ୍ରାହ୍ମଣ କୁଳରେ ଜନ୍ମ ହେଲେ ମଧ୍ୟ ସେ ପତିତ । ସେ ଗୋଟାଏ ପତିତା ରମଣୀ ବିବାହ କରିଛନ୍ତି ।'

ସାଧୁ ମହାନ୍ତ ଉତ୍ତର ଦେଲେ, 'ଉଦ୍ଧବ ପଣ୍ଡା ବିବାହ କରିବାର ଆମେ ଜାଣିନୁ । ଯଦି ବ୍ରାହ୍ମଣମାନଙ୍କ ଭିତରୁ କେହି ତାଙ୍କର ବିବାହ ଉତ୍ସବରେ କର୍ମ କରିଥାନ୍ତି । ବା ଆଜି କିଏ କର୍ମ କରିଥିବାର ଜାଣିଥାନ୍ତି ତେବେ ପ୍ରମାଣ ଦିଅନ୍ତୁ ।'

ହରି ମିଶ୍ର ଏ କଥାର ଉତ୍ତର ଦେଇ ପାରିଲେ ନାହିଁ । ବ୍ରାହ୍ମଣ ମାନଙ୍କ ଭିତରେ ଗୋଳମାଳ ହେଲା । ପତିତ ବିବାହ ନିୟମ ଅନୁସାରେ ଲତାକୁ ସେ ବିବାହ କରିନାହାନ୍ତି । ତେବେ ବୃଦ୍ଧ ବ୍ରାହ୍ମଣ ମାନଙ୍କୁ ଆଗି କହିଲେ, 'ଯଦି ସେ ତାକୁ ବୋଧ କରି ନାହାନ୍ତି ତାହାହେଲେ ଶୁଦ୍ଧ ହୁଅନ୍ତୁ ଓ ପ୍ରାୟଶ୍ଚିତ କରନ୍ତୁ । ତାହାହେଲେ ଦେଉଳକୁ ପୂଜା କରିବାରେ ଆମେ ବାଧା ଦେବୁ ନାହିଁ ।'

ଅନ୍ୟମାନେ ସମସ୍ତେ ପାଟିକଲେ । 'ଉତ୍ତମ ଏ ଠିକ୍ କହୁଛନ୍ତି । ଉଦ୍ଧବ ପଣ୍ଡା ଲତାକୁ ଛାଡ଼ିଦେଉ । ଆଉ ତାକୁ ପତିତ ଦୋଷ ଘଟିବ ନାହିଁ ।'

ସାଧୁ ମହାନ୍ତ କହିଲେ, 'ଆପଣମାନେ କଥାଟା ବୁଝନ୍ତୁ । ପତିତା ରମଣୀ କାହା ଘରେ ରହିଲେ କିଏ ପତିତ ହେବାର ଉଦାହରଣ ଦେଇ ପାରିବେ ଆପଣମାନେ ?'

Digitized by PPRACHIN, SOA

ବ୍ରାହ୍ମଣମାନେ ପଚାରିଲେ, 'ବସ୍ତୁତ ଅଛି । ପୁରାଣରେ ଅଛି, ଶାସ୍ତ୍ରରେ ଅଛି, ଆପଣଙ୍କୁ କ'ଣ ତାହା ଅଜଣା ?'

ସାଧୁ ମହାତ୍ମା କହିଲେ, 'ମୋତେ କାହିଁକି ଅଜଣା । ତେବେ ଜଗତରେ ଯାହା ଚଳୁଛି ତାକୁ ଆପଣମାନେ ଅସ୍ୱୀକାର କରି ପାରିବେ ନାହିଁ । ଆପଣମାନଙ୍କୁ ଉଦାହରଣ ଦେଉଛି । ବେଶୀ ଦୂର ଯା'ନ୍ତୁ ନାହିଁ । ଆପଣଙ୍କର ଏଇ ଜମିଦାରଙ୍କ ଘରେ ଅନେକ ସ୍ୱାମୀ ଓ ସମାଜ ପରିତ୍ୟକ୍ତା ରମଣୀ ଆଶ୍ରୟ ନେଇଛନ୍ତି ଅଜ୍ଞାତରେ । ଏବେ ବି କେତେ ଏ ଘରେ ଅଛନ୍ତି । ଯେଉଁମାନେ ସ୍ୱାମୀ ଓ ସମାଜ ପରିତ୍ୟକ୍ତା ସେମାନେ ତ ପତିତା । ତାହାହେଲେ ଜମିଦାରଙ୍କ ଘରେ ଏ ଯେଉଁମାନେ ଅଛନ୍ତି ତାଙ୍କ ଲାଗି କେହି ପତିତ ହେବନାହିଁ କେବେ ।'

ଏ କଥାରେ ସମସ୍ତଙ୍କ ମୁହଁ ଶୁଖି ଯାଇଥିଲା । ଜମିଦାର କଥାଟାର ଅର୍ଥରେ ଲଜ୍ଜିତ ହୋଇ ପଡ଼ିଲେ । କିନ୍ତୁ ସାଙ୍ଗେ ସାଙ୍ଗେ କହିଲେ, 'ମହିଷ ପତିତ ସହିତ ରହିଲେ ଦୋଷ ହୁଏ ନାହିଁ । ଲତା ମଧ୍ୟ ପତିତା ନୁହେଁ । ସ୍ୱାମୀର ମୃତ୍ୟୁ ପରେ ଉତ୍ତମ ପଣ୍ଡାଙ୍କ ପାଖରେ ଅଛି । ଏଥିରେ ଲୋକ ଲାଜ ।'

ହରିମିଶ୍ର ମଧ୍ୟ କହିଲେ, 'ଆରେ ଢେର ହେଲାଣି, ପୂଜା କର ।' ମାଧୁଧର, ସନାତନ, ଧରମୁ ଉଠି ଚାଲିଗଲେ । ସାଧୁ ମହାତ୍ମା କହିଲେ, ମହାରାଣୀଏ, 'ତୁମେ ଥାଅ ମୁଁ ହରିଙ୍କୁ ନେଇ ଯୋଗ ଯାଉଛି ।'



Digitized by PPRACHIN, SOA

(୨୩)

ଫେରନ୍ତା ରାସ୍ତାରେ ପ୍ରଦୀପ ପଚାରୁଥିଲା, 'ଜେଜେ ଜଙ୍ଗଲରେ ବାଘ ଦେଖନ୍ତି ।'

'ହଁ'

'ବାଘ ଦେଖିଛ ?'

'ହଁ'

ପ୍ରଦୀପ ଏ ହଁ ଦାର୍ଥି ବୁଝି ନ ପାରି ବଡ଼ ଜୋରରେ ହସି ପକାଇଲା । ବୁଢ଼ା ଚମକି ପଡ଼ିଲେ । ଚନ୍ଦ୍ର କିରଣରେ ସାରା ପ୍ରକୃତି ହସି ଉଠୁଛି । ଧଳା କଇଁଟିଏ ଭଳି ପ୍ରଦୀପ ହସୁଛି । 'ଜେଜେ ତମେ କ'ଣ ସବୁ କଥାକୁ ହଁ କରୁଛ ।' ଭାଂଗ ଖାଇଲେ ଘର ଲୋକେ ଏମିତି ହ'ନ୍ତି ।'

ବୁଢ଼ା ସାମ୍ନାକୁ ଚାହିଁଲେ । ମନ୍ଦିର ତୋଟା ଅଳ୍ପ ଦୂରରେ । ସେଇ ତୋଟା ଦେଇ ଯିବାକୁ ଭୟ ଲାଗେ । ସେଠି ଗୋଟାଏ ଭୂତ ଅଛି ବୋଲି ସମସ୍ତେ କହନ୍ତି । କିନ୍ତୁ ତୋଟା କଡ଼େ କଡ଼େ ଗଲେ ଅଧିକା ମାଇଲଏ ଯିବାକୁ ହୁଏ । ପ୍ରଦୀପ କହିଲା, 'ତୋଟା ବାଟରେ ଯିବ ନାହିଁ ।'

ବୁଢ଼ା କହିଲେ, 'ଶୀଘ୍ର ଯିବା କମିତ ?'

'ଭୂତ ଥିବ ।'

Digitized by PPRACHIN, SOA

'ପାଗଳ, ଭୂତ କୁଆଡ଼େ ଥାଏ !'

ଚୋଟା ପାଖେଇ ଆସିଲା । ପ୍ରଦୀପଙ୍କୁ ଲାଗୁଥିଲା ସେ ଭୂତ ରାଜ୍ୟରେ ପ୍ରବେଶ କରୁଛି । କେତେକଙ୍କର ଦେହକୁ ଲାଗି ଯାଉଛି । ଚୋଟାଟି ଭୟଂକର ଲାଗୁଥିଲା । ମନେ ହେଉଥିଲା କିଏ ଯେପରି ଡାକୁଛି । ବୁଢ଼ାର ମନଟା ବି ଦବି ଯାଉଥାଏ । ପ୍ରଦୀପ ଡ଼ରିବ ବୋଲି ସ୍ୱୀଗତ ଆତଙ୍କ କରିଦେଲା । କିନ୍ତୁ ପ୍ରଦୀପ ଶୁଣିବ । କାହାର ପଦ ଶବ୍ଦରେ ବୁଢ଼ାର ଗପ ବନ୍ଦ ହୋଇଗଲା । ପ୍ରଦୀପ କହିଲା, 'କେଜେ ଭୂତ ।' ବୁଢ଼ା କହିଲା, 'ନାଇଁରେ ।' ଆଗେଇ ପିଲା ସଙ୍ଗେ ସଙ୍ଗେ ଶବର ଗତି ବଢ଼ିଲା । ମନେ ହେଉଥିଲା ବୁଢ଼ାର ମୋଡ଼ ପାଖରେ କିଏ ଯେପରି ନାଚୁଛି । ପ୍ରଦୀପ ଆଉ ଆଗେଇ ନ ପାରି ବୁଢ଼ାକୁ କୁଣ୍ଢାଇ ଧଇଲା । ବୁଢ଼ା କପିଳେଶ୍ୱରଙ୍କୁ ଡାକୁଥାଏ । ଭାବୁଥାଏ ମାୟାଧର କାହିଁ ଷଡ଼ଯନ୍ତ୍ର କରିଛି କି ? ପ୍ରଦୀପକୁ ରକ୍ଷା କରିବାକୁ ହେବ । ତାକୁ ପଛରେ ରଖି ବୁଢ଼ା ଆଗେଇଲା । ହଠାତ୍ ଏକ ଭୟଂକର ଶବ୍ଦ କରି କାଳିଆ ଜୀବଟାଏ ଧାଇଁଆସି ଧକ୍କା ମାରିଲା । ସେଇ ଧକ୍କାରେ ପ୍ରଦୀପକୁ ଧରି ଖସିପଡ଼ିଲା ବୁଢ଼ା । ପ୍ରଦୀପ ଚିତ୍କାର କରି ଉଠିଲା । କାଳିଆ ଜୀବଟି ଫେରିଆସି ପଚାରିଲା, 'ପ୍ରଦୀପ କଟରେ ?'

ପ୍ରଦୀପ କିଛି କହିପାରୁ ନ ଥିଲା । ବୁଢ଼ା ଉତ୍ତର ଦେଲା, 'ଚକଳା' ।

'ହଁ କେଜେ ମୁଁ ତମ ପାଖକୁ ଧାଇଁଥିଲି ।'

ବୁଢ଼ା ଉଠି ଠିଆହେଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲା, 'ଖବର କ'ଣ ?'.

Digitized by PPRACHIN, SOA

କେଉଁଠା କଲ ?' ଧରମୁ ଶପଥ କରି କହିଲା ସେ କେଉଁଠା କରିବ ।
'ଆଜ କ'ଣ ଭଲେଇ କଲ ?' ସନାତନ ଜୋରରେ ଦେଇ କହିଲା ।
'ତଳେଇ ବଣ୍ଟନ କରୁଛୁ ।' ମାପୁଧର କହିଲା, "ତାଙ୍କ ତା ଦିନରେ ସୁବିଧା କରିବାକୁ ହେବ ।"

ଧରମୁ କହିଲା—'ସେମିତି କଲେ କ'ଣ ଏକତା ଭାଙ୍ଗିବନି ?'

ମାପୁଧର—'ଆରେ ଏତେ, ସେଇଥିପାଇଁ କ୍ଷୋଭ କ'ଣ ?'

ସନାତନ କହିଲା, 'ଠିକ୍ କଥା । ତେଲା, ଦାଁ କୁଦାପାଉ । ନହେଲେ ସେ ଆମ ଦାଁ ଦେଇ ଜୋର୍ ମତ ନେଇ ତଦାରେ ପକାଇ ଦେବ ।'

ଧରମୁ କହିଲା—'ହଉ ଠିକ୍ କଥା । ତାଙ୍କ ସକାଳେ ଆପଣ ଶୁଣିବେ ତଳେଇ ଦାଁରେ ଆଗରେ ନୋ ବୁଲୁଥିବ ।'

ସେ ତିନିଜଣ ଏପରି କଥା କହୁଥିଲାବେଳେ ଅଦୂରରେ ଜଣେ ରୂପ୍ୟାମୂର୍ତ୍ତି ସବୁ ଶୁଣୁଥିଲା । ପରକ୍ଷଣରେ ସେ ହାତି ଖୋଲି ସମସ୍ତଙ୍କୁ ଚମକାଇ ଦେଲା ।

ମାପୁଧର ପଚାରିଲା, 'ତୁ କିଏ ।'

ଲୋକଟା କହିଲା, 'ତିନି ମୋ ଦ୍ୱାରା ତଳେଇ କରି ଜୁଲୁମ କରୁଥିଲ । ଦଉ ପୋଡ଼ିଲା କଏ ?' ଧରମୁ ସନାତନ ପରସ୍ପରକୁ ମୁହଁକୁ ଚାହିଁଲେ ତାକାହେଲେ ।

ମାପୁଧର କହିଲା 'ବାହାପିଅଟା, ସନାତନ, ତା କଥାରେ କ୍ଷୋଭ କର ନାହିଁ ।'

Digitized by PPRACHIN, SOA

ଶ୍ୟେଳା—'ସେ'ଣ କହିଲ ସନ୍ତାପ ନାହିଁ । ପଦ ସ୍ଫୁର୍ତ୍ତିର ପ୍ରମାଣ ଦେବ । ଏତିକ ନୁହେଁ । ପ୍ରଚଣ୍ଡ ବୃଷ୍ଟି ଉପେକ୍ଷା କରିଛି । ସେଠା ଦେଇ ପାରିବ ନାହିଁ । ଯଦ ବା ଚଢ଼େ ଚାଟ୍ ଭାଷି ପାରିବ ନାହିଁ । ସବୁ ଅନ୍ତଃକ୍ରମ ତା'ର ବୃଥା ହେବ ।'

ମାୟାଧର କ୍ରୋଧ ପ୍ରକାଶ କରି କହିଲା— 'ଅଯଥା ବାହାଦୂରୀଆ କଥା କୁହାଏ କହନ୍ତି । ତରେ ଜଏ କହିଲା ଏକଥା ଶବକାକୁ । ଜଏ ଘର ଫୋଡ଼ିଲା । ଏ ବାହାରିଲା ବାହାଦୁରି ଦେଖାଇ ।'

ସନାତନ କହିଲା—'ଏମ୍ଭ ସେ ତ କଛୁ ଖରାପ କାମ କରି ନାହିଁ । ଶତ୍ରୁକୁ ଦେଖିବ ସନ୍ତାପ ନାହିଁ । କଳେବଳେ କୌଣସେ ପ୍ରାଣ ନେବ ।'

ମାୟାଧର କହିଲ—'ନା ସନାତନ ଶ୍ୟେଳ କେବେ ଏ କାମ କରେନାହିଁ ।' ଧମକେଇ ପଚାରିଲ, 'କ'ଣ ଏ କଥା ସତ ?'

ଶ୍ୟେଳ ଅତମଥ ହୋଇ କହିଲ—'ନା ।'

ମାୟାଧର କହିଲ—'ଦେଖିଲ ତ । ଏମାନଙ୍କ କାଣ୍ଡ ମୁଁ ଛପି ନାହିଁ !' ସ୍ଥିର ହେଲ ତକଳା ଦିନରେ ଦୋଷ ଲଦା ହେବ । ଧରମୁ ଓ ସନାତନ ଉଠିଗଲେ । ସେମାନେ ଗିବା ପରେ ଶ୍ୟେଳ କହିଲ—'ବାପା, ମୋତେ କାହିଁକି ମିଛରେ ଅପମାନ ଦେଲ ।'

'ଚୁପ୍ ମିଛୁଅ ।'

'ଭଗବାନଙ୍କ ରଣ । ମୁଁ ମିଛ କହିନାହିଁ ।'

Digitized by PPRACHIN, SOA

ମାସ୍ତ୍ରାଧର ନଇମିଯାଇ କହିଲେ—'ସବୁଠି ହତ କୁହାଯାଏ ନାହିଁ ।' ଭେଜା କ'ଣ ବୁଝିଲା କେଜାଣି ଟିକଏ ପରେ କହିଲା— 'ହେଲେ ବାପା, ପ୍ରଣିପ ବିନା ଚେଷ୍ଟା ଦେଇ ପାଶ୍ କରି ପାରିବ ନାହିଁ ।'

ମାସ୍ତ୍ରାଧର—'ସେ ତ ଅଛନ୍ତି ବୃତ୍ତି ଗାଇଡରେ ।'

ଭେଜା—'ଯାହା ଗାଇଡ୍ ସେଇଠି, ମୁଁ ତା ପଛରେ ଲାଗିଲି । କୁଆଡ଼େ ତାର ଖୋଜା ପାଉନି ଦେଖିବ ।'

ମାସ୍ତ୍ରାଧର କହିଲେ—'ନା, ତୁ ସେ ଭାବରେ ଭାବନା । ସେ ରାସ୍ତାରେ ତୁ ସଫଳ ହୋଇ ପାରିବୁନି ।'

ଭେଜା—ଆପଣଙ୍କର ଆଶୀର୍ବାଦ ଥିଲେ ହେବ ।'

ମାସ୍ତ୍ରାଧର ତାକୁ ହର୍ଷିତ ହୋଇ ଦେଖିଲେ ।



Digitized by PPRACHIN, SOA

କରୁଣାର ସୁନ୍ଦର ଘର ପୋଡ଼ିଯାଇଥିଲା । ତା ଜାଗାରେ ନୂଆ ଟାଇଲ୍ ଛାତର ଘରଟିଏ ତିଆରି ହୋଇଛି । ଧରମୁ, ସନାତନ, ମାଧବର ପ୍ରଭୃତିଙ୍କ ଅସ୍ପୃହତା ସତ୍ତ୍ୱେ ଗାଁବାଲାଙ୍କ ସାହାଯ୍ୟରେ ତା ଘର ପୁଣି ଗଢ଼ାଯାଇଛି । କିନ୍ତୁ ଗାଁଲୋକେ ଏବେସୁଦ୍ଧା ଆଶ୍ଚର୍ଯ୍ୟ ହେଉଛନ୍ତି । ଧଳା ପରି ଘର ପୋଡ଼ିଲା ପରେ ସେ ଧୂର୍ତ୍ତ ଲୋକ ସାହାଯ୍ୟ କଲା କିପରି ? ପ୍ରଥମେ 'ଧଳା ଘର ପୋଡ଼ୁଛି' କହିଲେ ସେ ଦେଖିଥିଲା । ପରେ କନ୍ତୁ ମାଝିଗଲା ପରି ଚୁପ୍ ରହିଲା । ଲୋକେ କ ଜାଣିକି ତାକୁ ବିଶ୍ୱାସ କରିପାରୁ ନ ଥିଲେ । କରୁଣା ବି ଆଶ୍ଚର୍ଯ୍ୟ ହୋଇଥିଲା । କେହି କେହି ଗାଁ ଲୋକେ କହୁଥିଲେ । 'ଧଳାର ପାପ ଦୂର କରିବା ପାଇଁ ଧଳା ଏତେ ସାହାଯ୍ୟ କଲା ।'

ଆଉ କେଏ କହୁଥିଲା—'ସାହାଯ୍ୟ ନ କରିଥିଲେ ଧଳାକୁ ନର୍କ ଭୋଗ କରିଥାନ୍ତା ।' ବୁଢ଼ା ସାଧୁ ମହାନ୍ତ ପଣ୍ଡା କ'ଣ ଜାଣିବାକୁ ଉତ୍କଣ୍ଠିତ ହୋଇ ନଥିଲେ । କରୁଣାକୁ ସେ କାରଣ ପଚାରିଥିଲେ । 'ଦୋଷୀକୁ ଧରେଇ ଦେବା କ'ଣ ଧର୍ମ ନୁହେଁ ?'

କରୁଣାର ଦୁଃଖ ଓ ଆଖି ମୁହଁର ଭାବ ଦେଖି ସାଧୁ ମହାନ୍ତ କହୁଥିଲେ—'ଏ ଆମ ଘରକଥା । ଏଠି ଆମକୁ କିଛି ଦୟା କରିବାକୁ ଦେବ । ତୁ କେବଳ ସନ୍ଦେହ କରୁଚୁ । ପ୍ରମାଣ କାହିଁ ? ପୁଣି ଧଳା ଦୋଷ କଲା'ପରି ରହୁଛି । ଯଦି ବା ଦୋଷ ସେ କରିଥାଏ ପ୍ରାୟଶ୍ଚିତ୍ତ କରିଛି ।' କରୁଣା ସବୁ ବୁଝିଗଲା ପରି ଫେରିଛି । ଦୋଷୀ ତାର ଭାଇ ନିଷ୍ଠୁର । ଆଉ ଭାଇକୁ କ୍ଷମାଦେବା ପାଇଁ ଏବେ ସେ ମନେମନେ ଠିକ୍ କରିଥିଲା ।



Digitized by PPRACHIN, SOA

(୨୫)

ଯନ୍ତ୍ରଣା ବଢ଼ିଗଲା ପରେ ବୁଢ଼ା ଉଠି ଠିଆହେଲା । ସେତେବେଳେ ଅପରାହ୍ଣର କଅଁଳ ଖରା ପୃଥିବୀ ପୃଷ୍ଠକୁ ଓହ୍ଲେଇ ଆସିଥିଲା । ବୁଢ଼ା ତାହାକୁ କିଛି ନ କହି ଚାଲିଲା । ବହୁଦିନ ହେଲା କପିଳେଶ୍ୱର ମନ୍ଦିରକୁ ଯାଇନାହିଁ ସେ । କାରଣ ସାହି ସାରା ହୋଇ ଗ୍ରାମଦେବୀଙ୍କ ଆସ୍ଥାନ ସାର ହେଲା । ତା'ପରେ ଗଡ଼ି ଚାଲିଲା ପଶ୍ଚିମ ଦିଗକୁ । ଦୂରରୁ ମନ୍ଦିରର ବାନା ଧରି ଲହଣ୍ଡି ଭାଙ୍ଗି ଉଡ଼ୁଥିଲା । ବୁଢ଼ା ଅନ୍ୟ ମନସ୍କ ହୋଇ ଚାଲିଗଲା । ସେତେବେଳେ ମନ୍ଦିରର ଅଗଣା ଭିତରେ ଯାଇ ପହଞ୍ଚିଛି ଜାଣିପାରିନି । ବାଆଁଆଡକୁ ଅନାଇ ବୁଢ଼ା ଦେଖୁଥିଲା ପଶ୍ଚିମ ଆକାଶକୁ । ସେଠି ଲାଲ ହଳଦିଆ ଖେଳର ଉତ୍ସବ । ଜନକୂଜନର ସନ୍ଧ୍ୟା ଓହ୍ଲେଇ ଆସୁଛି । ମନ୍ଦିର ପୂଜା ସାରି ମାନେ ଚାଲିଗଲେଣି । ଯେଉଁମାନେ ଜଗାଉଥିଏ କରିଥିବା ସେ । ସାଧୁ ମହାନ୍ତ ଜାଣିପାରି ନାହାନ୍ତି । କେତେ ଶ୍ରମ, କେତେ ବ୍ୟଥା ଦେହ ଆଉ ଗୁଳିରେ ମିଶିଗଲାଣି । ସାଧୁ ମହାନ୍ତ ବିରକ୍ତ ହେଉଥିଲେ ଅନ୍ତରରେ । ବିରକ୍ତ ହେଉଥିଲେ ଭିତରି ମନ ଭିତରେ । କ'ଣ ପାଇଁ ସେ ଅଶ୍ୱାସ୍ଥ୍ୟର ହୁଏ ଅପେ ଆପେ । କିଏ କହେ ତାକୁ ଗଢିବାକୁ । ବୁଢ଼ୀର କଥା ମନେପଡ଼େ ।

'ଆଉ କୋଉଥି ପାଇଁ ଏତେ ମାୟା ।'

Digitized by PPRACHIN, SOA

'ମାୟା' କ'ଣ ବୁଢ଼ା ବୁଝେନ । ଜଗତରେ ସମସ୍ତେ ତା'ର । ସମସ୍ତଙ୍କୁ ସେ ପଥ ଦେଖାଇବ । ସମସ୍ତଙ୍କ କଥା ସେ ବୁଝିବ । ଏଇ ତାର ଧର୍ମ । ସେଉ ଧର୍ମରେ ସେ ତୋଳେଇ ଥିଲା କପିଳେଶ୍ୱର ମଠରେ । ସେଇ ଧର୍ମରେ ସେ ଚାଲିଛି । ଅଟମା ନ ଢ଼ିଛି କଣ୍ଠରେ ପାଦ ତା'ର ଲକ୍ଷ୍ୟ ହେଉଛି । ମାୟାଧର, ସନାତନ, ଧରମୁ ଝିଅ ନେକଙ୍କ ବ୍ୟଙ୍ଗ ବଦ୍ଧ ପ ହେଉଛନ୍ତି ସବୁ ତ କୁ କେନ୍ଦ୍ର କରି । ପୁଣି ଦେଖେ ବୁଢ଼ା—ଜନ୍ମନା, ଲତା, ଜଙ୍ଗଲ, ପ୍ରଦୀପ । ଝରଣ ଛଳ ଛଳ ସ୍ୱର୍ଣ୍ଣାଣୀ । ହାତ ବଢ଼େଇ ମନାନ୍ତି ସେ, ଜାବୁଡ଼ି ଧରିଛନ୍ତି, ଆଗିର ଲୁହରେ ଗ୍ଲାନିର ଯନ୍ତ୍ରଣାରେ । ଏଇ କ'ଣ ମାୟା ! ମାଟିଆପଡ଼ା ଉନ୍ନତ ହେଉଛି । ଏଠି ଗଣ୍ଡା ଗଣ୍ଡା ପାଠପଢ଼ୁଆ ପିଲା । ଏଠି ଆଧୁନିକ ଡାକ୍ତରଖାନା । ଏଠି ଶିକ୍ଷାଳୟ । ଏଠି ବି.ଡି.ଓ. ଅଫିସ୍, କ୍ଲବ ଘର । ଏଠି କ୍ଲବରେ ଭୋଟ କ'ଣ ଜାଣନ୍ତି । ଏମାନେ ସବୁ ଶିକ୍ଷିତ । ମାଟିଆପଡ଼ା ଗାଁକୁ ଏମିତ ଦେଖିବ ବୋଲି ସେ ଭାବିଥିଲା । ଏଠି ପ୍ରତି କାମରେ ତା'ର ସ୍ୱାକ୍ଷର ରହିଛି । ସମସ୍ତେ କହୁଛନ୍ତି ସେ କର୍ତ୍ତା । ଦୋଷ କହୁଛି, ଗର୍ବ ବି କହୁଛି । ଏଇ କର୍ତ୍ତା ପଣର କଣ୍ଟେଇରେ ତା ମନରେ ଗର୍ବ ଆସୁଛି । ଧୂର୍ତ୍ତ ତର୍କ ଆସୁଛି । ଖେଳ ଦେଉଛ ଯନ୍ତ୍ରଣା । କପିଳେଶ୍ୱର ପ୍ରେରଣ୍ୟ ପାଇଁ ଡାକୁଛନ୍ତି । ସେ ଦାସ, ସେ ଧର୍ମଭକ୍ତ, ସେ ବହୁ ସମସ୍ୟା ସମାଧାନ କରିଛି । ଏଇ ତାର ଆତ୍ମତୃପ୍ତି, ଗର୍ବ, ଅହମିକା । ଏଇଥିରୁ ସେ ଦଣ୍ଡ ପାଉନି । ଏଇଥିପାଇଁ ମାୟାଧର ଆସିଛି ସନାତନ ଦନ୍ତ ଦେଇଛି । ଲତା ଜଙ୍ଗଲ, କରୁଣା ମାୟାଧର ସମସ୍ୟା ହୋଇଛି । ଗର୍ବ ଗୁଡ଼ । କନ୍ଦୁ କ ଗର୍ବ ?

ବୁଢ଼ା ଭାବୁଥିଲା । ଆଜି ଚନ୍ଦ୍ରମା । ଆଜି ଅନ୍ଧକାର ସେ କେତେ ଦେଖାଇଛ । ଜନ୍ମ ତୃପ୍ତ ତା'ର ଅନ୍ତ । ଣାର ସେ

Digitized by PPRACHIN, SOA

କରି ପାରିବ । ମାଧ୍ୱାଧରକୁ କ୍ଷମାଦେଇ । କତା ଛଡ଼ବକୁ ରକ୍ଷା
କରିବ ବୋଲି ଚକ୍ରାପଣକୁ ଧ୍ୱଜପାଇ, କର୍ମଭର ଧ୍ୱଜ ପାଇବ ।
ଧୂଳେ କଏ ? ମନ୍ଦିର ସ୍ୱସାକ୍ଷ । ଭୁଲବ କମିଶ ? ଷାଠିଏ କ ସଲୁର
ବର୍ଷ ବଞ୍ଚିବ । କୋଡ଼ିଏ କ ବୃଳଣ ବର୍ଷ ସଂସାରରେ କର୍ମ କରିବ ।
ସେ କ'ଣ ବୃଦ୍ଧବୟ ଯୁଗ ଯୁଗ ଧରି ଲୋକେ ତାକୁ ମନେ ପକାନ୍ତୁ ?
ତା ନାଁରେ ତମ୍ବା ପଟାଟିଏ ଶିଳାଲିପିଟିଏ ରଖି ଦେବାକୁ ମନ
ହେବନି ତାର ? ମନ ହେବ ନିଶ୍ଚୟ । ମନ ମଣିଷ ର ଆପଣା ନୁହେଁ ।
ମନର ଆପଣା ମଣିଷ । ମଣିଷ ତ୍ୟାଗ କରିବ । ତ୍ୟାଗ ହିଁ ମାନବିକତା
ବୋଲି ବୁଝିବ । କିନ୍ତୁ କେବେ ତ୍ୟାଗୀ ବୋଲି କ ଛବ ରଖି ପାରିବ ?
ଯେମିତି ରହୁଥିଲେ ପୂର୍ବର ପୁରୁଷମାନେ !

ତ୍ୟାଗ କଲି ବୋଲି ଯେ ତୃପ୍ତି ପାଏ । ତ୍ୟାଗ କଲି ବୋଲି ଯେ
ଯଶ ଆଶା କରେ ସେଇଥିପାଇଁ ମାଧ୍ୱାଧର କହେ । ସେଇଥିପାଇଁ
ସନାତନ କହେ । ଏସବୁ ଭୁଲ ଧାରଣା । କେଉଁ ଭାବାକୁ ଦେଖି ମ
କରିବାକୁ କର୍ମ ନାହିଁ । କଏ କାହାକୁ ପରୀକ୍ଷା କରିବାକୁ ସୃଷ୍ଟି
ହୋଇନାହିଁ । ମଣିଷ ସୃଷ୍ଟି ହୋଇଚି କର୍ମ କରିବା ପାଇଁ । କର୍ମ
କରିବ କରେଇବ । ସେଇ ତା'ର ପ୍ରକୃତ ସହଜ-ସ୍ୱଚ୍ଛ-ଗତି । ସାଧୁ
ମହାନ୍ତ ସେଇ ସୋତରେ କରିଛି । ଆଜି ସବୁ ଚିନ୍ତା ଅର୍ଥହୀନ ।
ସାଧୁ ମହାନ୍ତ କହିଦିବ । ଯଦି ସଂସାର ମାଧ୍ୱାଧରମୟ ହୋଇଯାଏ
ତେବେ କି ତ କରିବ । ସୁରଯ୍ୟଡ଼େ ଅନ୍ଧାର ଘୁଞ୍ଚିଲାଣି । ଦୂର
ଆକାଶର ପଶ୍ଚିମ କୋଣରେ ନାଲି ରେଖାଟିଏ ଜମିଛି । ଗଛମାନ
ସୂର୍ଯ୍ୟର ପ୍ରମାଣ ଦେବାକୁ ସେ ରହିଯାଇଛି କହୁ ସମସ୍ତ । ତା ଉପରେ
ଢୁଏ ତ ମିଶିଯିବ ସେ ଅନ୍ଧାର ଭିତରେ । କାଳର ନିରବଚ୍ଛିନ୍ନତା
ଭିତରେ ତାର ସ୍ଥିତି କ'ଣ ଅର୍ଥହୀନ ?

Digitized by PPRACHIN, SOA

ମଠର ସେବା ଘଡ଼ନ୍ତି ଗଣି ଆତ୍ମାଙ୍କ ମିଷ୍ ମିଷ୍ କଥା । ମୋତେ ଦେଖ । ସୃଷ୍ଟିର ସଙ୍କେତ ମୁଁ ଶିବଲିଙ୍ଗ । ଧ୍ୱଂସର ପ୍ରତୀକ ନୁହେଁ । ସବୁ କେବଳ ସୃଷ୍ଟି । ଅନନ୍ତରତ ସୃଷ୍ଟି । ସାଧୁ ମହାନ୍ତ ଶୁଣୁଥିଲେ । ସତେ ତ ସବୁ ନିରନ୍ତରତ ସୃଷ୍ଟିର ଲୀଳା । ସୃଷ୍ଟି ହିଁ ଲକ୍ଷ୍ୟ । ପ୍ରଣାମ ଜଣାଇଲେ କପିଳେଶ୍ୱରଙ୍କୁ । ଫେରୁଥିଲେ ସେ ନୀଳକୁ, ନ... ଯୋଗୀ ଅନେକ ଦେଖାଉଥିଲେ ଗୋଲ ଅଭେଦ୍ୟ ଅନ୍ଧକାର ଭିତରେ ।



Digitized by PPRACHIN, SOA